

# ମହାଭାରତ ଚରିତମାଳା

## ଧର୍ମରାଜ ଯୁଧିଷ୍ଠିର

ଶ୍ରୀ କାଶୀନାଥ ମିଶ୍ର



ମହାଭାରତ ଚରିତମାଳା

# ଧର୍ମରାଜ ଯୁଧିଷ୍ଠିର



କାଶୀନାଥ ମିଶ୍ର

# ଧର୍ମରାଜ ଯୁଧିଷ୍ଠିର

ଲେଖକ

କାଶୀନାଥ ମିଶ୍ର

ଅବସରପ୍ରାପ୍ତ ହାଇସ୍କୁଲ ପ୍ରଧାନ ଶିକ୍ଷକ

ଆଲିଶାବଜାର, କଟକ-୭୫୩୦୦୧

ପ୍ରକାଶକ

କେ. କେ. ମିଶ୍ର ଆଣ୍ଡ କୋ

ଖଟବିନ୍ ସାହି, କଟକ ୭୫୩୦୦୮

ମୁଖ୍ୟ ପରିବେଷକ

ବୁକ୍ସ ଇଣ୍ଟରନାସନାଲ

ବାଙ୍କାବଜାର, କଟକ ୭୫୩୦୦୧

ମୁଦ୍ରକ

ବାସନ୍ତୀ ଦୁର୍ଗା ପ୍ରିଣ୍ଟର୍ସ

ଖଟବିନ ସାହି, କଟକ ୭୫୩୦୦୮

ପ୍ରଥମ ପ୍ରକାଶ

ରଥ ଯାତ୍ରା, ୧୯୮୮

ମୂଲ୍ୟ

ସାତ ଟଙ୍କା

**Dharmaraj Judhisthir**

Written by

**Kasinath Mishra**

Published by

**K. K. Mishra & Co.**

Cuttack-753008

1 st. Published in 1988

Price

**Rupees Seven**

ପ୍ରକାଶ

ରାତି କ୍ରମଶଃ ଗଭୀର ହେଉଛି । ଆକାଶରେ ତାରାମାନେ ଯେପରି ଯମୁନା ନଦୀରେ ସେମାନଙ୍କର ମୁଖମଣ୍ଡଳର ଛବି ଦେଖିବାରେ ବ୍ୟସ୍ତ । ଚତୁର୍ଦ୍ଦିଗ ନୀରବ ନିସ୍ତବ୍ଧ । ବେଳେବେଳେ ନଦୀର କୁଳୁକୁଳୁ ଧ୍ୱନିରେ ସେହି ନିସ୍ତବ୍ଧତା ଭଗ୍ନ ହେଉଛି ।

ଯୁବକଙ୍କ ନିଦ ନାହିଁ । ସେ ଶଯ୍ୟା ତ୍ୟାଗ କରି ଉଠି ଆସିଲେ । ଛାତ ଉପରେ ନିରୁଦ୍ଦେଶ୍ୟ ଭାବରେ ପଦଚାଳନା କରୁଥାନ୍ତି । ରାତିର ସେହି ଶୀତଳତାର ପରିବେଶ ମଧ୍ୟରେ ଯୁବକଙ୍କର ମୁଖମଣ୍ଡଳରେ ବିନ୍ଦୁ ବିନ୍ଦୁ ସ୍ୱେଦ । ଯେପରି କୌଣସି ବିଷୟରେ ସେ ଗଭୀର ଚିନ୍ତା କରୁଅଛନ୍ତି । ଏହିପରି କେତେ ସମୟ ପଦଚାଳନା କଲାପରେ ସେ ଓହ୍ଲାଇ ଆସିଲେ ତଳକୁ । ଯମୁନା ନଦୀର କୂଳେ କୂଳେ ସମାନ୍ତର ଭାବରେ ଲମ୍ବି ଯାଇଛି ରାସ୍ତା ନିବିଡ଼ ଜଙ୍ଗଲ ମଧ୍ୟକୁ ।

ଯୁବକ ଚାଲିଥାନ୍ତି । କେଉଁଠାକୁ ଯାଉଛନ୍ତି, କି ଉଦ୍ଦେଶ୍ୟରେ ତାଙ୍କର ଏହି ଅଗ୍ରଗତି ବୁଝାଯାଉ ନ ଥାଏ । ସେ ଆଗକୁ ଆଗକୁ ବଢ଼ି ଚାଲିଥାନ୍ତି ।

ହଠାତ୍ ଏହି ନୀରବ ନିସ୍ତବ୍ଧତା ଭଗ୍ନହେଲା ସୁସ୍ୱର ସଙ୍ଗୀତ ଧ୍ୱନିରେ । ଯେପରି କୌଣସି ଅଭିଜ୍ଞ ବାଦକ ବୀଣା ବଜାଉଛନ୍ତି । ଯୁବକ ଟିକିଏ ଅଟକି ହୋଇ ଠିଆ ହୋଇଗଲେ । ତତ୍ପରେ ଯେଉଁ- ଦିଗରୁ ସେହି ମନମୁଗ୍ଧକର ବୀଣାର ଝଙ୍କାର ଭାସି ଆସୁଥିଲା, ସେହି ଦିଗକୁ ଲକ୍ଷ୍ୟ କରି ଚାଲିଲେ ।

କିଛି ଦୂର ଅଗ୍ରସର ହେଲାପରେ ଦେଖିଲେ, ଯମୁନା ନଦୀକୂଳସ୍ଥ ଗୋଟିଏ ପାହାଡ଼ର ମଧ୍ୟ ଦେଶ ନୀଳ ଆଲୋକରେ ଉଦ୍ଭାସିତ ।

ସେହି ଆଲୋକକୁ ତନ୍ମୟ ଭାବରେ ଚାହିଁ ରହିଲେ ଯୁବକ । ଦେଖିଲେ ସେହି ନୀଳ ଆଲୋକ ମଧ୍ୟରୁ ବାହାରି ଆସୁଛି ଏକ ଦିବ୍ୟ ମୂର୍ତ୍ତି ।

ଯୁବକ ହାତ ଯୋଡ଼ି ଠିଆହେଲେ । ସଙ୍ଗୀତର ମୂର୍ଚ୍ଛନା ବନ୍ଦ ହୋଇଗଲା । ତା ସଙ୍ଗେ ସଙ୍ଗେ ଏକ ପବିତ୍ର ନୀଳ ଜ୍ୟୋତି ଯେପରି ଯୁବକଙ୍କର ମୁଖମଣ୍ଡଳ ଆଚ୍ଛନ୍ନ କଲା ।

ଏହି ଦିବ୍ୟ ପୁରୁଷ କ୍ରମଶଃ ଅଧିକ ଉଜ୍ଜ୍ୱଳ ଦେଖାଗଲେ । ମନେହେଲା ସେ ଜଣେ ସ୍ୱର୍ଗବାସୀ ଦେବତା, ମୁନିଙ୍କର ରୂପ ଧାରଣ କରିଛନ୍ତି ।

ମହାମୁନି, ମୋର ସାଷ୍ଟାଙ୍ଗ ପ୍ରଣିପାତ ଗ୍ରହଣ କରନ୍ତୁ । ଯୁବକ ବିନୟର ସହିତ ମୁନିଙ୍କ ନିକଟରେ ମୁଣ୍ଡ ନୁଆଁଇଲେ । ରାତିର ଏହି ଅସମୟରେ ଆପଣ କାହିଁକି

ସେଠାରେ ଉପବେଶନ କରନ୍ତୁ ? ମୋ ଘରକୁ ପାଦ ଆସନ୍ତେ, ଖୁବ ଖୁସି ହୁଅନ୍ତି । ଉତ୍ତର ପ୍ରତୀକ୍ଷାରେ ଯୁବକ ଦଣ୍ଡାୟମାନ ରହିଲେ ।

ମୁକ୍ତ ଆକାଶ ତଳେ ରହିବାରେ ମୋର ଆନନ୍ଦ । ଇଟାପଥର ସେଇ ରାଜନବର ମୋତେ ସୁଖଶାନ୍ତି ଦେଇପାରେ ନାହିଁ—ମୁନିଙ୍କ ମୁଖ ମଣ୍ଡଳରେ ସ୍ୱର୍ଗୀୟ ଆଭା ।

ଆପଣ କେଉଁଠୁ ଆସିଲେ—ଯୁବକ ବିନମ୍ର ସହିତ ପ୍ରଶ୍ନ କଲେ ।

ମୋର ସେପରି କୌଣସି ନିର୍ଦ୍ଦିଷ୍ଟ ଘର ନାହିଁ । ଯେଉଁଠାରେ ମୁଁ ରହେ ତାହାହିଁ ମୋର ଘର, ତାହା ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ଯେ କୌଣସି ସ୍ଥାନ ହୋଇପାରେ । ଦିବ୍ୟ ପୁରୁଷଙ୍କ ମୁଖରେ ହାସ୍ୟର ଛଟା । ବର୍ତ୍ତମାନ ମୁଁ ତୁମର ପୂର୍ବ ପୁରୁଷ ଯେଉଁଠାରେ ଅଛନ୍ତି ସେହିଠାରୁ ଆସିଛି ।

ଯୁବକ ବୁଝିପାରିଲେ ନାହିଁ ସେ ଜାଗ୍ରତ କି ସ୍ୱପ୍ନ ବସ୍ଥା !

ବର୍ତ୍ତମାନ ଆପଣ ମର୍ତ୍ତ୍ୟମଣ୍ଡଳକୁ ଆସିଛନ୍ତି, କହନ୍ତୁ ମହାଭାଗ, ଆପଣଙ୍କର କେଉଁ ସେବା ମୁଁ କରିପାରେ—ମୁଁ କୁରୁବଂଶର ରାଜା । ଯୁବକଙ୍କର ଦୃଷ୍ଟି ନିବଦ୍ଧ ଥାଏ ସେହି ଦିବ୍ୟ ପୁରୁଷଙ୍କ ମୁଖମଣ୍ଡଳରେ ।

ହେ ଯୁବକ, ମୁଁ ତୁମକୁ ଭଲଭାବରେ ଜାଣେ-ମୁନି ଉତ୍ତରଦେଲେ । ମୋର ସମ୍ବାଦ ମନଦେଇ ଶୁଣ । ତାହାହିଁ ହେବ ତୁମର ଶ୍ରେଷ୍ଠ ସେବା ।

ସମ୍ବାଦ ! କାହା ନିକଟରୁ ? ଯୁବକ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

ତୁମର ପୂଜ୍ୟ ପିତୃଦେବଙ୍କଠାରୁ—ମୁନି ପୂର୍ବପରି ହସିହସି ଉତ୍ତର ଦେଲେ ।

ମୋର ପୂଜ୍ୟ ପିତୃଦେବ ! ଯୁବକ ପୁଣି ବଡ଼ୁଗଲେ, ସେ ସ୍ୱପ୍ନ ଦେଖୁନାହାନ୍ତି ତ ।
ତା ପରେ ପଚାରିଲେ ସମ୍ବାଦଟି କ'ଣ ?

ତୁମର ପିତୃଦେବ ଶାନ୍ତିରେ ନାହାନ୍ତି—ଏହି ଖବର ତୁମକୁ ଜଣାଇବା ପାଇଁ ମୋର ଆଗମନ ।

ମୋର ପିତୃଦେବ ଅଶାନ୍ତିରେ ଅଛନ୍ତି—କଣ କଲେ ସେ ଶାନ୍ତିରେ ରହିପାରିବେ ? ଯୁବକ ଜାଣିବାପାଇଁ ଅତ୍ୟନ୍ତ ବ୍ୟଗ୍ରତା ପ୍ରକାଶକଲେ ।

ଶୁଣ—ମୁନି ଆରମ୍ଭ କଲେ "ମୁଁ ଥାଇଥିବ ପରି ରାଜ୍ୟ ଶାସନ କଲି । ଦେବତେ ରାଜା ମୋର ବଶ୍ୟତା ସ୍ୱୀକାର କଲେ । କେବଳ ମୁଁ ରାଜସୂୟ ଯଜ୍ଞ କରିପାରିଲି ନାହିଁ । ଭାବିଥିଲି ମୋର ପୁତ୍ର ତାହା ସମ୍ପାଦନ କରିବ—ସେ ମଧ୍ୟ ତାହା କଲା ନାହିଁ । ଏହା କରିବା ତାର ପବିତ୍ର କର୍ତ୍ତବ୍ୟ । ଯେତେଦିନ ପର୍ଯ୍ୟନ୍ତ ଏହି ଯଜ୍ଞ ଅନୁଷ୍ଠିତ ହୋଇ ନାହିଁ ସେତେଦିନ ପର୍ଯ୍ୟନ୍ତ ମୁଁ ଏହିପରି ଅଶାନ୍ତିରେ ରହିଥିବି ।"

ରାଜସୂୟ ଯଜ୍ଞ ଅନୁଷ୍ଠାନ—ଯୁବକ ଆଶ୍ଚର୍ଯ୍ୟ ହେଲେ ।

ଯୁବକଙ୍କୁ ନୀରବରେ ଦଣ୍ଡାୟମାନ ହେବା ଦେଖି ମୁନି କହିଲେ, ଶୁଣ ଯୁବକ। ପିତାଙ୍କୁ ସନ୍ତୁଷ୍ଟ କରିବା ପୁତ୍ରର ଏକାନ୍ତ କର୍ତ୍ତବ୍ୟ-ଏହି ମର୍ତ୍ତ୍ୟଭୂମିରେ ଓ ପରଲୋକରେ ମଧ୍ୟ—

ଯୁବକ ଆଉ କଣ କହିବାକୁ ଯାଉଥିଲେ-ଦେଖିଲେ ସେ ଜଳ ଆଲୋକ କ୍ରମେ ଅପସରି ଯାଇଛି, ତା ସହିତ ସେହି ଦିବ୍ୟ ପୁରୁଷ ମଧ୍ୟ ଅନ୍ତର୍ହିତ ହୋଇଯାଇଛନ୍ତି।

କିଏ ଏ ଯୁବକ—କିଏବା ଏହାଙ୍କର ଜନକ !

ଯେଉଁ ଯୁବକଙ୍କ କଥା କୁହାଗଲା ତାଙ୍କର ନାମ ଯୁଧିଷ୍ଠିର। ସେ କୁରୁ ସମ୍ରାଟ ପାଣ୍ଡୁଙ୍କର ପୁତ୍ର। ଯେଉଁ ଦିବ୍ୟ ପୁରୁଷ ତାଙ୍କୁ ପିତାଙ୍କର ସମ୍ବାଦ ପରିବେଷଣ କଲେ, ସେ ହେଉଛନ୍ତି ନାରଦ।

ପାଣ୍ଡୁଙ୍କର ପୁତ୍ରଙ୍କ ନାମ ଧର୍ମ ଯୁଧିଷ୍ଠିର କାହିଁକି ଦିଆଗଲା ସେ ବିଷୟରେ ଏକ ସୁନ୍ଦର କାହାଣୀ ଅଛି।

ଧୃତରାଷ୍ଟ୍ର ଓ ପାଣ୍ଡୁ ଦୁଇ ଭାଇ। ଧୃତରାଷ୍ଟ୍ର ବଡ଼, ପାଣ୍ଡୁ ସାନ। ମାତ୍ର ଧୃତରାଷ୍ଟ୍ର ଜନ୍ମାନ୍ଧ ଥିବାରୁ ପ୍ରଚଳିତ ପ୍ରଥା ଅନୁସାରେ ସେ ହସ୍ତିନାପୁରର ରାଜ ସିଂହାସନରେ ବସି ପାରିଲେ ନାହିଁ। ପାଣ୍ଡୁ ରାଜା ହୋଇ ରାଜ୍ୟ ଶାସନ କରୁଥାନ୍ତି। ଜଣେ ଉତ୍ତମ ଶାସକ ରୂପେ ତାଙ୍କର ଖ୍ୟାତି ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହେଲା। ପ୍ରଜାକୁଳ ତାଙ୍କୁ ଧନ୍ୟ ଧନ୍ୟ କଲେ। ସେ ବୀରତ୍ୱରେ ଅଦ୍ୱିତୀୟ ଥିଲେ। ଏହି ଅପୂର୍ବ ବୀରତ୍ୱ ତାଙ୍କର ଦିଗ୍‌ବିଜୟରେ ପ୍ରକଟିତ ହୋଇଥିଲା। ବହୁ ରାଜା ତାଙ୍କର ବଶ୍ୟତା ସ୍ୱୀକାର କରିଥିଲେ। ପାଣ୍ଡୁ ମହାନ୍ ଭାରତବର୍ଷର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିଥିବାରୁ ସମସ୍ତଙ୍କ ମୁହଁରେ ତାଙ୍କର ପ୍ରଶଂସା।

ସାନଭାଇ ପାଣ୍ଡୁଙ୍କର ପ୍ରଶଂସା ଧୃତରାଷ୍ଟ୍ର ସହିପାରୁ ନଥାନ୍ତି। ମନଦୁଃଖରେ ଥାଆନ୍ତି। ତାଙ୍କର ରାଣୀ ଗାନ୍ଧାରୀ ପତିଙ୍କର ସର୍ବଦା ବିରସ ଭାବ ଦେଖି ତାଙ୍କୁ ଏହାର କାରଣ ପଚାରିବାରୁ ସେ କହିଲେ ପ୍ରିୟେ, ମୋର ଦୁଃଖର କାହାଣୀ ଆଉ କାହାକୁ କହିବି ! ମୁଁ ଜ୍ୟେଷ୍ଠ, ପାଣ୍ଡୁ ମୋର ଅନୁଜ। ହେଲେ ତାର ବଳବୀର୍ଯ୍ୟ ପୃଥିବୀରେ ପ୍ରକାଶ ପାଇଲା। ମୋତେ କେହି ପଚାରିଲେ ନାହିଁ। ଏପରି ଜୀବନ ରଖି ଲାଭ କଣ ? ଭାବୁଛି ଗୋଟିଏ ଭଲ ଦିନ ଦେଖି ତ୍ରିବେଣୀ ସଙ୍ଗମରେ ଝାସ ଦେବି। କ୍ଷତ୍ରୀ ହୋଇ ଯଦି ପର ଅନ୍ନରେ ପ୍ରତିପାଳିତ ହୁଏ, ରାଜା ହୋଇ ଯଦି ଯୁଦ୍ଧକୁ ଭୟ କରେ, ଦେବତାଙ୍କର ଯଦି ତାପ୍ରତି ଦୟା ନ ଥାଏ, ତୀର୍ଥବାସୀ ଯଦି ମାୟାମୋହ ତ୍ୟାଗ କରି ନପାରନ୍ତି ତେବେ ସେ ଜୀବନ ନିରର୍ଥକ।

ପତିଙ୍କର ଏ କଥାରେ ଗାନ୍ଧାରୀ ଚମକି ପଡ଼ିଲେ। ପ୍ରକୃତିସ୍ଥ ହୋଇ ସେ ସ୍ୱାମୀଙ୍କୁ ଆଶ୍ୱାସନା ଦେଇ କହିଲେ, ପ୍ରିୟତମ, ମୁଁ ତ ସହଜରେ ନାରୀ, ତୁମଙ୍କୁ ବା କି ସାନ୍ତ୍ୱନା ଦେବି ? ତେବେ ମୋର କହିବା କଥା ଏତିକି ଯେ ମନୁଷ୍ୟ ଏ ସଂସାରରେ ନିଜର କର୍ମଫଳ

ଭୋଗ କରେ । ଏହି କର୍ମ ପୁରୁଷ ଯାହାକୁ ଶ୍ରେଷ୍ଠକରେ ତ ତାହାକୁ ମହା ବଳବନ୍ତ କରେ, ପୁଣି ତାହାର ଯୋଗ୍ୟ କଏ ଅନ୍ଧ ହୁଏତ ତାହାର ପିଠିରେ କୁଜ ବାହାରେ । ପୁଣି କଏ ସୁନ୍ଦର ହୁଏତ ଅନ୍ୟ କାହାର କୁତ୍ସିତ ରୂପ ସନ୍ଦର୍ଶନରେ ମନରେ ଘୃଣା ଅସେ । ଏହି ପରି ଏ ସଂସାରରେ କଏ କେତେ ସୁଖ ଭୋଗ କରେ ତ ଆଉ କେହି ଦୁଃଖର ମହାଗର୍ଭରେ ପତିତ ହୋଇଥାଏ । ଏସବୁ କଥା ବିଗ୍ଭର ମନରେ ଦୁଃଖ ଅନୁଭବ କରିବା ବା ଅଧୈର୍ଯ୍ୟ ହୋଇପଡ଼ିବା ଅନୁଚିତ । ପାଣ୍ଡୁ ତୁମର ସାନ ଭାଇ, ସେ ଆନନ୍ଦରେ ଅଛି । ଏଥିରେ ତୁମର ଗର୍ବ ଅନୁଭବ କରିବାର କଥା । ତାହା ନକରି ତୁମେ ତାର ଶ୍ରୀଦେଖି କାତର ହୋଇ ପଡ଼ୁଛ । ପରଶ୍ରୀକାତର ବ୍ୟକ୍ତି ଇହ ଜନ୍ମରେ ବା ପର ଜନ୍ମରେ ସୁଖ ଭୋଗ କରି ନ ପାରେ । ମୋର ଅନୁରୋଧ, ଆପଣ ଆଜି ଏସବୁ ନୀଚ ଭାବ ହୃଦୟରୁ ତ୍ୟାଗ କରନ୍ତୁ । ପରର ସୁଖରେ ସୁଖୀ ହୁଅନ୍ତୁ, ଆପଣ ଶାନ୍ତି ପାଇପାରିବେ ।

ଯୋଗକୁ ପାଣ୍ଡୁ ସେତିକିବେଳେ ବଡ଼ ଭାଇଙ୍କୁ ଦେଖା କରିବାକୁ ଯାଉଥାନ୍ତି । ସେଠାରେ ଉପସ୍ଥିତ ହେବାବେଳକୁ ସେ ଭାଇ ଓ ଭାଉଜଙ୍କର କଥାବାର୍ତ୍ତା ଆଢ଼ୁଆଳରେ ରହି ଶୁଣିଲେ । ପାଣ୍ଡୁ ଥିଲେ ଯେପରି ବୀର, ସେହିପରି ଉଦାର । ଧୃତରାଷ୍ଟ୍ରଙ୍କୁ ସେ ନିଜର ପିତାଙ୍କପରି ସମ୍ମାନ ଦେଉଥିଲେ—ତାଙ୍କ ମତରେ ଜ୍ୟେଷ୍ଠ ଭ୍ରାତା ପିତୃସମ ।

ସେ ସେତେବେଳେ ନିଜ ବଡ଼ ଭାଇଙ୍କର ମନଦୁଃଖର କାରଣ ଜାଣିପାରିଲେ ଆଉ କ୍ଷଣେ ମାତ୍ର ରାଜାହୋଇ ରହିବା ତାଙ୍କର ଇଚ୍ଛା ହେଲା ନାହିଁ । ସେ ନିଜ ବଡ଼ ଭାଇଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲେ ଭାଇ, ମୁଁ ରାଜା ହେଲେ ହେଁ କେବେ ହେଲେ ତୁମପ୍ରତି ଅସମ୍ମାନ ପ୍ରଦର୍ଶନ କରି ନାହିଁ, ସବୁବେଳେ ଆପଣଙ୍କୁ ନିଜର ପିତାପରି ଦେଖି ଆସିଛି । ତଥାପି ତୁମେ ମୋ ଉପରେ ଅସନ୍ତୁଷ୍ଟ । ମୋର ସମ୍ପଦ ଦେଖି ଆନନ୍ଦିତ ହେବା ପରିବର୍ତ୍ତେ ମୋ ଠାରେ ଈର୍ଷାନ୍ୱିତ । ତୁମ ମନରେ ଦୁଃଖଦେଇ ଅଉ ରାଜଗାଦିରେ ବସିବାକୁ ମୋର ମନ ବଳୁନାହିଁ ।

ତତ୍ପରେ ପାଣ୍ଡୁ ଅମାତ୍ୟ ପୁରୋହିତମାନଙ୍କୁ ଡାକି ଧୃତରାଷ୍ଟ୍ରଙ୍କ ଉପରେ ରାଜ୍ୟଶାସନ ଭାର ସମର୍ପଣ କରି ବନବାସୀ ହେଲେ ।

ସଞ୍ଜୟ ତାଙ୍କର ମନ୍ତ୍ରୀ । ସେ ରାଜାଙ୍କୁ ଚେତାଇ ଦେଲେ ଧୃତରାଷ୍ଟ୍ର ଅନ୍ଧ, ସେ କିପରି ଶତ୍ରୁମାନଙ୍କ କବଳରୁ ରାଜ୍ୟ ରକ୍ଷା କରିପାରିବେ !

ପାଣ୍ଡୁ ମନ୍ତ୍ରୀଙ୍କୁ ପ୍ରତିଶ୍ରୁତି ଦେଇ କହିଲେ, ବନସ୍ତରେ ରହିଲେ ସୁଦ୍ଧା ରାଜ୍ୟ ପ୍ରତି ସର୍ବଦା ଦୃଷ୍ଟି ରଖିଥିବି—ଆପଦ ବିପଦ ପଡ଼ିଲେ ସହାୟ କରୁଥିବି । ମାତ୍ର ହସ୍ତିନାପୁରରେ ଆଉ ରାଜା ହୋଇ ରହିବି ନାହିଁ । ମୋର ଜ୍ୟେଷ୍ଠଭ୍ରାତା ରାଜକାର୍ଯ୍ୟ ବୁଝିବେ । ଆଜିଠାରୁ ପ୍ରଜାମାନେ ମୋର ଅନୁଗତ ନହୋଇ ତାଙ୍କର ବଶ ହେବେ,

ଏହାକହି ପାଣ୍ଡୁ ବନଗାମୀ ହେଲେ । କୁନ୍ତୀ ତାହାଙ୍କର ସହଧର୍ମିଣୀ, ସେ ମଧ୍ୟ ସ୍ୱାମୀଙ୍କର ଅନୁସରଣ କଲେ ।

ହସ୍ତିନାର ଈଶାନ୍ୟ କୋଣରେ ବୃନ୍ଦାରକ ବନ । ଶତଶୃଙ୍ଗ ପର୍ବତ ସେହି ବନର ଶୋଭାବର୍ଦ୍ଧନ କରୁଥାଏ । ପାଣ୍ଡୁ କୁନ୍ତୀଙ୍କ ସହିତ ଏହି ପର୍ବତରେ ଆଶ୍ରୟ ନେଲେ । ବନବାସରେ ଥିଲାବେଳେ ମଦ୍ର ଦେଶର ରାଜ କନ୍ୟା ମାଦ୍ରୀଙ୍କ ସହିତ ତାଙ୍କର ବିବାହ ହୋଇଥିଲା । କୁନ୍ତୀ ଓ ମାଦ୍ରୀ ଦୁଇ ରାଣୀଙ୍କୁ ନେଇ ପାଣ୍ଡୁ ଆନନ୍ଦରେ ରହିଲେ ।

ଦିନକର କଥା—ଧନୁ ଧରି ରାଜା ମୃଗୟା କରିବାକୁ ଯାଇଥାନ୍ତି ସେହି ସେ ବନରେ ବହୁସମୟ ଶିକାର ଅନ୍ୱେଷଣରେ ବୁଲିଲେ, ମାତ୍ର କୌଣସି ଜନ୍ତୁ ପାଇଲେ ନାହିଁ । ଶେଷରେ କ୍ଲାନ୍ତହୋଇ ସେ ଗୋଟିଏ ଗଛମୂଳେ ବିଶ୍ରାମ ନେଉଛନ୍ତି ଅଖି ଆଗରେ ପଡ଼ିଲେ ହରିଣ ହରିଣୀ ଯୁଗଳ ମୂର୍ତ୍ତି, ନାନା କ୍ରୀଡ଼ାରେ ସେମାନେ ବ୍ୟାପୃତ ଥାନ୍ତି । ସୁବର୍ଣ୍ଣ ସୁଯୋଗ ଉପସ୍ଥିତ ଜାଣି ରାଜା ଧନୁରେ ଶର ସନ୍ଧାନ କଲେ । ଅବ୍ୟର୍ଥ ତାଙ୍କର ଲକ୍ଷ୍ୟ । ସହସା ଏକ ତୀକ୍ଷ୍ଣ ମୁନା ନାରାଚ ଯାଇ ହରିଣକୁ ବିଦ୍ଧ କଲା—କି ଆଶ୍ଚର୍ଯ୍ୟ ! ହରିଣୀ ମୁଖରେ ମନୁଷ୍ୟର ବିକଳ ଚିତ୍କାର । ରାଜା ବିଚଳିତ ହୋଇ ପଡ଼ିଲେ, ଦେଖିଲେ ଜଣେ ଋଷି ଶରବିଦ୍ଧ ହୋଇ ପଡ଼ିଛନ୍ତି । ରାଜାଙ୍କୁ ଦେଖି ସେ ଅଭିଶାପ ଦେଲେ—ପାପିଷ୍ଠ ବିନା ଦୋଷରେ ଆମର କ୍ରୀଡ଼ା କୌତୁକ ସମୟରେ ତୁ ମୋତେ ହତ୍ୟାକଲୁ—ତୁ ସ୍ତ୍ରୀ ସମ୍ଭୋଗ କରିପାରିବୁ ନାହିଁ, ଯଦି ଇଚ୍ଛା କରୁ ଏହିପରି ଅକସ୍ମାତ୍ ଶର ଆସି ତୋତେ ହତ୍ୟା କରିବ ।

ରାଜା ତଟସ୍ଥ । ମୁନି ଓ ମୁନିପତ୍ନୀ ହରିଣ ହରିଣୀର ଛଦ୍ମ ବେଶରେ ବିହାର କରୁଥିଲେ । ସେ ଜାଣନ୍ତେ କିପରି ?

ବିରସ ମନରେ ରାଜା ଫେରି ଆସି ରାଣୀଦ୍ୱୟଙ୍କୁ ଏହି ଋଷି ଅଭିଶାପର ବିବରଣୀ ପ୍ରଦାନ କଲେ । ସେହିଦିନଠାରୁ ରାଜା ଓ ରାଣୀଦ୍ୱୟ ଅତି ବିରସ ମନରେ କାଳ କାଟୁଥାନ୍ତି ।

ପ୍ରତ୍ୟେକ ନାରୀ ସନ୍ତାନ ଇଚ୍ଛା କରନ୍ତି-ପୁରୁଷ ମଧ୍ୟ ନିଜ କୁଳରକ୍ଷା କରିବା ଏକ ମହାନ ଧର୍ମ ବୋଲି ବିବେଚନା କରନ୍ତି ।

ତାହା କିପରି ସମ୍ଭବ ! କୁନ୍ତୀ ବଡ଼ ଚିନ୍ତିତ ହୋଇ ପଡ଼ିଲେ । ଦିନେ ସେ ରାଜାଙ୍କୁ ଦୁର୍ବାସା ଦେଇଥିବା ମାଳ ବିଷୟରେ କହିଲେ । ଏହି ମାଳର କରାମତି ଏହି ଯେ ଏହାକୁ ଧରି ସେ ଯେଉଁ ଦେବତାଙ୍କୁ ସ୍ମରଣ କରିବେ ସେ ତାଙ୍କ ନିକଟରେ ଉପସ୍ଥିତ ହେବେ ଏବଂ ତାଙ୍କର ଔରସରେ ସେ ଲାଭ କରିବେ ପୁତ୍ର ସନ୍ତାନ ।

ସୁଜାତ ସନ୍ତାନ ପାଇଁ ବ୍ୟାକୁଳ ଥିଲେ । ଏପରି କରିବା ପାଇଁ ସେ କୁନ୍ତୀଙ୍କୁ ଅନୁମତି ଦେଲେ, ଆଉ ମଧ୍ୟ ପରାମର୍ଶ ଦେଲେ, ଏହି ମନ୍ତ୍ର ସାହାଯ୍ୟରେ ମାଦ୍ରୀ ଯେପରି ପୁତ୍ର ସନ୍ତାନ କୋଳରେ ଧରନ୍ତି ।

ତାହାହିଁ ହେଲା । ଦିନେ କୁନ୍ତୀ ଶୁଦ୍ଧପୂତ ଭାବରେ ଉକ୍ତ ମନ୍ତ୍ର ଧରି ଧର୍ମ ଦେବଙ୍କୁ ସ୍ମରଣ କଲେ । ଏହି ମନ୍ତ୍ରପୂତ ମନ୍ତ୍ରର ଅଦ୍ଭୁତ ପ୍ରଭାବ । କୁନ୍ତୀ ଧର୍ମ ଦେବଙ୍କୁ ସ୍ମରଣ କରନ୍ତାସରେ ତାଙ୍କର ଆସନ କମ୍ପିଲା । ସଙ୍ଗେ ସଙ୍ଗେ ଏକ ଦିବ୍ୟ ଶୁଭ୍ର ପୁରୁଷ କୁନ୍ତୀଙ୍କ ଶଯ୍ୟା ପାର୍ଶ୍ୱରେ ଅବିର୍ଭୂତ ହେଲେ ଏବଂ କୁନ୍ତୀଙ୍କ ସହିତ ସେହି ରାତିଟି ଯାପନ କଲେ ।

ପ୍ରଭାତ ହେଲା । କୁନ୍ତୀଙ୍କ କୋଳରେ ଏକ ଅନନ୍ୟ ପୁତ୍ର ସନ୍ତାନ । ପୁଅକୁ ଦେଖି କୁନ୍ତୀଙ୍କ ହୃଦୟରେ ଆନନ୍ଦର ଜୁଆର ଖେଳିଗଲା । ଏପରି ସୁନ୍ଦର ପୁତ୍ର କଣ ମର୍ତ୍ତ୍ୟରେ ସମ୍ଭବ ହୋଇପାରେ । ନବ ଜାତ ଶିଶୁର ଶରୀର ଶୁଭ୍ର ସ୍ଫଟିକପ୍ରାୟ ଜକ୍ ଜକ୍ କରୁଛି । କାନ ଦୁଇଟି ଲମ୍ବାଲମ୍ବା ଓଷ୍ଠ ପକ୍ୱ ବିମ୍ବ ସମ । ବୃଷଭସ୍କନ୍ଧ ସ୍କନ୍ଧ, ସିଂହ ପରି ଠାଣି । ବାହୁ ମୃଣାଳ ପରି । ଅଙ୍ଗୁଳିଗୁଡ଼ିକ ଅର୍ଦ୍ଧ ପ୍ରସ୍ଫୁଟିତ ଚମ୍ପକ କଢ଼ ସଦୃଶ, ମୁଖ ଶରତ୍ ଚନ୍ଦ୍ର ପରି । ମନେ ହେଲା ସତେ ଯେପରି ସ୍ୱୟଂ ନିରଞ୍ଜନ ଶିଶୁ ରୂପରେ ଅବତୀର୍ଣ୍ଣ ।

ଧର୍ମଦେବ ପୁତ୍ରକୁ ଆଶୀର୍ବାଦ କରି କହିଲେ ବତ୍ସ, ଏ ସଂସାରରେ ତୁ ହେବୁ ଧର୍ମର ଅବତାର-ସବୁବେଳେ ଧର୍ମରେ ତୋର ମତି ରହିବ । ଏହିପରି ନବଜାତ ଶିଶୁକୁ ଆଶୀର୍ବାଦ କରି ଧର୍ମ ଦେବତା ଅନ୍ତର୍ହିତ ହୋଇଗଲେ ।

ପୁତ୍ରକୁ ଦେଖି ପାଣ୍ଡୁରାଜା ମହାଖୁସି-ଆନନ୍ଦରେ ନାମ ଦେଲେ ଧର୍ମ ଯୁଧିଷ୍ଠିର ।

ଏହି ଶତଶୃଙ୍ଗ ପର୍ବତରେ ଅଧିବାସକାଳରେ ଦୁର୍ବାସାଙ୍କ ମନ୍ତ୍ରପୂତ ମନ୍ତ୍ର ସାହାଯ୍ୟରେ ପବନଦେବତାଙ୍କ ଔରସରେ ଭୀମ ଓ ଇନ୍ଦ୍ରଙ୍କ ଔରସରେ ଅର୍ଜୁନ କୁନ୍ତୀଦେବୀଙ୍କ ଗର୍ଭରୁ ଜାତ ହୋଇଥିଲେ ଏବଂ ଅଶ୍ୱିନୀ କୁମାରଙ୍କ ଔରସରେ ମାଦ୍ରୀଙ୍କ ଗର୍ଭରୁ ଜାତ ହୋଇଥିଲେ ଦୁଇଟି ଯମଜ ସନ୍ତାନ—ନକୁଳ ଓ ସହଦେବ । ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ ପଞ୍ଚପାଣ୍ଡବ ନାମରେ ପରିଚିତ ।

## ରାଜାରୁ ଭିକାରୀ

ଶତଶୃଙ୍ଗ ପର୍ବତରେ ଅବସ୍ଥାନ କାଳରେ ଅତି ଅବର୍ତ୍ତିକ ଭାବରେ ପାଣ୍ଡୁଙ୍କର ମୃତ୍ୟୁହେଲା । ଏହା ବ୍ରହ୍ମର୍ଷିଙ୍କ ଅଭିଶାପର ଫଳ । ସ୍ୱାମୀଙ୍କର ମୃତ୍ୟୁରେ ମାଦ୍ରୀ ଅତ୍ୟନ୍ତ ଦୁଃଖିତା ହୋଇ ପଡ଼ିଲେ । ଜୀବନ ତାଙ୍କୁ ଦୁର୍ବିସହ ବୋଧହେଲା । ସେହି ଦୁଃଖରେ ସେ ସ୍ୱାମୀଙ୍କର ଚିତାରୋହଣ କଲେ । ସଂସାରରୁ ବିଦାୟ ନେବାପୂର୍ବରୁ କୁନ୍ତୀଙ୍କୁ କହିଗଲେ; ଭଉଣୀ, ସଂସାରର ଜ୍ୱାଳାଯନ୍ତ୍ରଣା ଘୋର ସହିଲା । ମୋ ପୁତ୍ରଦୁଇଟି ତୁମକୁ ଲାଗିଲେ । ଆଜିଠାରୁ ତୁମେ ଆଉ ତିନି ପୁଅର ଜନନୀ ନୁହଁ । ପଞ୍ଚପୁତ୍ରର ଜନନୀ ।

କୁନ୍ତୀଙ୍କର ଶେଷ ଅନୁରୋଧ ଅନୁ ବଣ୍ଟପ୍ରସ୍ତାବରେ କୁନ୍ତୀ ପାଳନ କଲେ । ଅନ୍ତ ପୁରରେ ସେ ନିଜର ପୁଅ ସହିତ ମାଦ୍ରୀଙ୍କର ପୁଅଙ୍କୁ ଲାଳନ ପାଳନ କଲେ ।

ପାଣ୍ଡୁଙ୍କର ପ୍ରେତକୃତ୍ୟ ସେହି ଶତଶୃଙ୍ଗ ପର୍ବତରେ ପାଳିତ ହେଲା । ତତ୍ପରେ ମୁନିଋଷିଙ୍କ ପରାମର୍ଶରେ କୁନ୍ତୀ ପାଞ୍ଚ ପୁଅଙ୍କୁ ନେଇ ହସ୍ତିନାକୁ ଆସିଲେ । ମହାମୁନି ବ୍ୟାସଦେବଙ୍କ ପରାମର୍ଶ ଅନୁସାରେ ସମ୍ଭାଦବ ଏହି ପାଞ୍ଚଜଣଙ୍କୁ ମୃତ ପାଣ୍ଡୁରାଜାଙ୍କର ଉତ୍ତରାଧିକାରୀ ରୂପେ ଗ୍ରହଣ କଲେ ।

ଶଶୀକଳାପରି ପାଞ୍ଚଭାଇ ବଢ଼ିଲେ । କି ସୁନ୍ଦର ରୂପ, ଯେପରି ବଳବାନ ସେହିପରି ସୁଶୃଙ୍ଖଳ । ଯିଏ ସେମାନଙ୍କୁ ଦେଖୁଥିଲେ ଆଖି ଫେରାଇ ପାରୁନଥିଲେ । ପିଲାମାନେ ବୟସରେ ଯେତେ ବଢ଼ିଲେ ସେମାନଙ୍କର ସୁଗୁଣ ଫୁଲର ମହକ ପରି ଚାରିଆଡ଼େ ବ୍ୟାପିଗଲା । ସମସ୍ତଙ୍କ ମୁଖରେ ପିଲାମାନଙ୍କର ପ୍ରଶଂସା । କ୍ରମେ ସେମାନେ ସମସ୍ତଙ୍କର ପ୍ରୀତିପାତ୍ର ହୋଇ ପଡ଼ିଲେ । ମାତ୍ର ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି ଏଥିରେ ବିରକ୍ତ ହୋଇ ପଡ଼ିଲେ । ଯେଉଁମାନେ ଦୁଷ୍ଟ ପ୍ରକୃତିର ସେମାନେ ଅନ୍ୟର ପ୍ରଶଂସା ସହିପାରନ୍ତି ନାହିଁ-ବରଂ ତାପ୍ରତି ଈର୍ଷା ପୋଷଣ କରନ୍ତି, ବିରକ୍ତ ହୁଅନ୍ତି, ତାଙ୍କର ଅନିଷ୍ଟ ଚିନ୍ତା କରନ୍ତି ।

ନିଜେ ଭୀଷ୍ମ ରାଜପୁତ୍ରମାନଙ୍କର ଶିକ୍ଷାଭାର ଗ୍ରହଣ କରିଥିଲେ । ସେମାନେ କିପରି ସର୍ବଗୁଣ ସମନ୍ୱିତ ହୋଇ କୁଳ ଉଜ୍ଜ୍ୱଳ କରିବେ, ଏଥିପାଇଁ ସେ ଯତ୍ନବାନ ଥିଲେ । ପରେ ରାଜପୁତ୍ରମାନଙ୍କର ସମସ୍ତ ଶିକ୍ଷାର ଭାର ଗ୍ରହଣ କଲେ ପର୍ଶୁରାମଙ୍କ ଶିଷ୍ୟ ଦ୍ରୋଣ । ଶିକ୍ଷାକାଳରେ ମଧ୍ୟ ପାଞ୍ଚଭାଇ ବିଦ୍ୟାରେ, ଅସ୍ତ୍ରଶସ୍ତ୍ର ପ୍ରୟୋଗ କୌଶଳରେ ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି ଭାଇମାନଙ୍କୁ ଟପିଯାଇଥିଲେ ।

ରାଜପୁତ୍ରମାନଙ୍କର ଅସ୍ତ୍ରଶିକ୍ଷା ଶେଷ ହେଲା । ଶିକ୍ଷା ଶେଷରେ ଶିଷ୍ୟମାନଙ୍କର ବିଦ୍ୟାବୁଦ୍ଧି ଓ ଅସ୍ତ୍ର ପ୍ରୟୋଗ କୌଶଳ ପରୀକ୍ଷା କରିବା ପାଇଁ ଗୁରୁ ଯେଉଁ ବ୍ୟବସ୍ଥା କରିଥିଲେ ସେଥିରେ ଅର୍ଜୁନ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲେ । ଆଉ କୌଣସି ଶିଷ୍ୟ ତାଙ୍କର ସମକକ୍ଷ ହୋଇପାରିଲେ ନାହିଁ—ଏହାଦେଖି ଦୁର୍ଯ୍ୟୋଧନ ଦୁଃଶାସନ ପ୍ରଭୃତିଙ୍କର ଦେହ ସହିଲାନାହିଁ । ହିଂସାରେ ସେମାନେ ଉନ୍ତ ଜଳିଭ ଜଳିବାକୁ ଲାଗିଲେ ।

ଭୀମ, ଗଦାଚାଳନାରେ, ଅର୍ଜୁନ ଧନୁର୍ଦ୍ଧାରୀ ରୂପେ ଯେପରି ଖ୍ୟାତିଲାଭ କରିଥିଲେ ଯୁଧିଷ୍ଠିର ଧର୍ମର ଅବତାର ରୂପେ କୁରୁମାନଙ୍କ ମଧ୍ୟରେ ପ୍ରତିଷ୍ଠା ଲାଭକଲେ । ଧର୍ମର ରକ୍ଷକ ରୂପେ ମହାନ ଭରତ ବଂଶ ସାରା ଆର୍ଯ୍ୟାବର୍ତ୍ତରେ ପ୍ରତିଷ୍ଠାଲାଭ କରିଥିଲେ ।

ଏହି ସତ୍ୟ ଓ ନ୍ୟାୟର ରକ୍ଷକ ରୂପେ ଭୀଷ୍ମ ବରାବର ଯତ୍ନବାନ ଥିଲେ । ସେ ପିତାଙ୍କର ପରିତୃପ୍ତି ପାଇଁ ବାର ପରିଗ୍ରହ କରିନଥିଲେ ମଧ୍ୟ, ରାଜ ସିଂହାସନ ତ୍ୟାଗ କରିଥିଲେ ମଧ୍ୟ ଏଯାବତ୍ ରାଜ୍ୟ ଶାସନରୂପ ଗୁରୁଦାୟିତ୍ୱ ବହନ କରିଆସିଥିଲେ ।

ତାଙ୍କର ଆନ୍ତରିକ ଇଚ୍ଛାଥିଲା ଏହି ଦାୟିତ୍ୱରୁ ମୁକ୍ତିଲାଭ କରିବା ପାଇଁ । ମାତ୍ର ରାଜବଂଶରେ ଗୋଟିକପରେ ଗୋଟିଏ ଏପରି ଘଟଣା ଘଟିଗଲା ଯଦ୍ୱାରା ସେ ଏହି ଗୁରୁଦାୟିତ୍ୱରୁ ତ୍ରାହି ପାଇବାର କୌଣସି ଉପାୟ ଦେଖୁନଥିଲେ । ବର୍ତ୍ତମାନ ତାଙ୍କ ହୃଦୟରେ ଆଶାର ସଞ୍ଚାର ହେଲା । ସେ ସ୍ପଷ୍ଟରୂପେ ଅନୁଭବ କଲେ ଯଦି ଯୁଧିଷ୍ଠିରଙ୍କୁ ଶାସନ ଭାର ଦିଆଯାଏ, ତେବେ ସେ ପ୍ରଜାମାନଙ୍କୁ ସତ୍ୟରେ ନ୍ୟାୟରେ ପାଳନ କରିବେ, ବଂଶର ମର୍ଯ୍ୟାଦା ଅକ୍ଷୁଣ୍ଣ ରହିବ ।

ଭୀଷ୍ମ ତାଙ୍କର ମନକଥା ସୂତପୁତ୍ର ମନ୍ତ୍ରୀ ବିଦୁର ଓ ମହାମୁନି ବେଦବ୍ୟାସଙ୍କ ଆଗରେ ପ୍ରକାଶ କଲେ । ସେ ଦୁହେଁ ଭୀଷ୍ମଙ୍କ ପ୍ରସ୍ତାବରେ ଏକମତ ହେବାରୁ ଯୁଧିଷ୍ଠିର ମହାସମାରୋହରେ ହସ୍ତିନାପୁରର ଯୁବରାଜ ରୂପେ ଅଭିଷିକ୍ତ ହେଲେ । ସତ୍ୟ ଓ ନ୍ୟାୟପରାୟଣ ଯୋଗୁଁ ସେ କେବଳ ଯୁଧିଷ୍ଠିର ଯୁବରାଜ ହେଲେ ତାହା ନୁହେଁ । କୁରୁ ରାଜସିଂହାସନରେ ତାଙ୍କର ହକ୍ ଦାବୀ ଥିଲା । କାରଣ ତାଙ୍କର ପିତା ପାଣ୍ଡୁ କୁରୁ ମାନଙ୍କର ଶେଷ ରାଜା ଥିଲେ ।

ଭୀମଙ୍କର ଶାରୀରିକ ଶକ୍ତି, ଅର୍ଜୁନଙ୍କର ଅସ୍ତ୍ରବିଦ୍ୟାରେ ପାରଙ୍ଗମତା, ଯୁଧିଷ୍ଠିରଙ୍କ ଯୁବରାଜପଦରେ ଅଭିଷେକ ଦୁର୍ଯ୍ୟୋଧନଙ୍କୁ ବିବ୍ରତ କରି ପକାଇଲା । ସେ ନିଜର ପିତା ଧୃତରାଷ୍ଟ୍ରଙ୍କ ନିକଟକୁ ଯାଇ ସେମାନଙ୍କ ବିରୋଧରେ ନାନା ଅଭିଯୋଗ ଅଣିଲେ । ସେ ପିତାଙ୍କୁ ଚେତାଇ ଦେଲେ—ହସ୍ତିନାପୁରର ଲୋକେ ନାନା କଥା କହୁଛନ୍ତି । ଏପରିକି ସେମାନଙ୍କର ଆପଣଙ୍କ ପ୍ରତି ଖାତିର ନାହିଁ । ସେମାନଙ୍କ ମତରେ ଯୁଧିଷ୍ଠିର ବର୍ତ୍ତମାନ ତ ଯୁବରାଜ ହୋଇଗଲେ । ଦିନେ ଆସିବ ଯେତେବେଳେ ସେ କୁରୁସିଂହାସନ ଅରୋହଣ କରିବେ । ଯଦି ଏପରି ହୁଏ, ତେବେ ଆମ୍ଭମାନଙ୍କର ଅବସ୍ଥା କଣ ହେବ ଭାବି ପାରୁଛନ୍ତି ? ଅନ୍ଧତ୍ୱ ଯୋଗୁ ତୁମେ ତ ରାଜା ହୋଇପାରିଲ ନାହିଁ ଏବଂ ତୁମର ଭାଇ ରାଜାହେଲେ । ଯଦି ଯୁଧିଷ୍ଠିର ରାଜା ହୁଅନ୍ତି ତେବେ ଆମକୁ ଆଉ କିଏ ପଚାରିବେ । ଯୁଧିଷ୍ଠିରଙ୍କ ପରେ ତାଙ୍କର ପୁତ୍ର ଏବଂ ପୌତ୍ରାଦି ରାଜା ହେବେ । ଆମ୍ଭେମାନେ ସବୁଦିନ ପାଇଁ ସେମାନଙ୍କ ଦୟାରେ ବଞ୍ଚିରହିବା । ସେମାନଙ୍କ ଉପରେ ଖାଦ୍ୟବସ୍ତ୍ର ପାଇଁ ନିର୍ଭର କରିବୁ । ଏପରି ବଞ୍ଚିବାଠାରୁ ନରକବାସ ବରଂ ଶ୍ରେୟସ୍କର ।

ଧୃତରାଷ୍ଟ୍ର ଅନ୍ଧହେଲେ ମଧ୍ୟ ବି, ତାଙ୍କର ସାନ ଭାଇ ପାଣ୍ଡୁଙ୍କର ପୁତ୍ରମାନଙ୍କ ପ୍ରତି ଯଥେଷ୍ଟ ସ୍ନେହଥିଲା । କିନ୍ତୁ ତାଙ୍କର ଏକମାତ୍ର ଦୁର୍ବଳତା ଥିଲା—ତାହା ହେଉଛି ଅତ୍ୟଧିକ ପୁତ୍ରସ୍ନେହ । ସେଥିପାଇଁ ଦୁର୍ଯ୍ୟୋଧନ ଯେତେବେଳେ ଯାହା ଅସି କହନ୍ତି ପାଣ୍ଡବ ପାଞ୍ଚ ଭାଇଙ୍କର ଅମଙ୍ଗଳ ସାଧନ କରିବା ପାଇଁ, ଯେଉଁ ଯୋଜନା ଉପସ୍ଥାପିତ କରନ୍ତି ସେସବୁ ସେ ଅନ୍ୟାୟ ଏହା ଉପଲବ୍ଧି କଲେ ମଧ୍ୟ ପୁତ୍ରକୁ ସେଥିରୁ ନିବୃତ କରିବା ତାଙ୍କ ପକ୍ଷରେ ସମ୍ଭବ ହୁଏ ନାହିଁ । ବରଂ ଏହି ବିବେକ ବିଗର୍ହିତ କାର୍ଯ୍ୟରେ ତାଙ୍କୁ ସେ ସମର୍ଥନ କରନ୍ତି ।

ତାଙ୍କର ଏହି ଦୁର୍ବଳ ଚରିତ୍ର ଯୋଗୁ ଯେ ସେ ଏକ ସମୟରେ ଚରମ ବିପର୍ଯ୍ୟୟର ସମ୍ମୁଖୀନ ହେବେ, ଏହା ସେ ଅବଧାରଣ କରିପାରି ନ ଥିଲେ ।

ପୁତ୍ରର କଥା ଶୁଣି ଧୃତରାଷ୍ଟ୍ର କହିଲେ ବାବୁ, ଯାହା କହୁଛୁ ସତ । ଆମ୍ଭେମାନେ ଯାହାକଲେ ମଧ୍ୟ ଯୁଧିଷ୍ଠିର ସତ୍ୟ ପଥରୁ, ନ୍ୟାୟ ମାର୍ଗରୁ କଦାପି ବିଚ୍ୟୁତ ହେବେ ନାହିଁ । ସେ ସମସ୍ତଙ୍କୁ ଭଲପାଆନ୍ତି । ବାସ୍ତବରେ ସେ ତାଙ୍କ ପିତା ପାଣ୍ଡୁଙ୍କର ସମସ୍ତ ଭଲଗୁଣ ଉତ୍ତରାଧିକାରସୂତ୍ରରେ ପାଇଛନ୍ତି । ଲୋକେ ସେଥିପାଇଁ ତାଙ୍କୁ ପ୍ରଶଂସା କରନ୍ତି, ସମର୍ଥନ ମଧ୍ୟ କରନ୍ତି । ରାଜ୍ୟର ସବୁ ମନ୍ତ୍ରୀ, ସେନାଧ୍ୟକ୍ଷ ତାଙ୍କ ପକ୍ଷରେ, ଯଦି ଆମ୍ଭେ ତାଙ୍କ ପ୍ରତି ଅନ୍ୟାୟ ଆଚରଣ କରିବା ରାଜ୍ୟବାସୀ ବିଦ୍ରୋହ କରିବେ—ଆମ୍ଭମାନଙ୍କର ଅପଚେଷ୍ଟା ବୃଥାହେବ, ଆମ୍ଭେମାନେ ଅପମାନିତ ହେବା ।''

ଦୁର୍ଯ୍ୟୋଧନ ପିତାଙ୍କୁ ବୁଝାଇ ଦେଲେ ଯେ ତାଙ୍କର ଆଶଙ୍କା ଅମୂଳକ । ବରଂ ଦ୍ରୋଣ, କର୍ଣ୍ଣ ପ୍ରଭୃତି ବୀରମାନେ ଯୁଧିଷ୍ଠିରଙ୍କ ବିରୋଧରେ ତାଙ୍କୁ ସାହାଯ୍ୟ କରିବେ । ଆଉ ମଧ୍ୟ ପିତାଙ୍କୁ ସତର୍କ କରାଇଦେଲେ, ଯଦି ସେ ସେମାନଙ୍କୁ ବାରୁଣାବତକୁ ପଠାଇ ନ ଦିଅନ୍ତି ତେବେ ଅବସ୍ଥା ଅସମ୍ଭାଳ ହେବ । ଦୁର୍ଯ୍ୟୋଧନଙ୍କର ଏହି ପ୍ରସ୍ତାବକୁ କେତେକ କୁରୁମୁଖ୍ୟ ସମର୍ଥନ କଲେ । ବାଧ୍ୟହୋଇ ଧୃତରାଷ୍ଟ୍ର ଏଥିରେ ସମ୍ମତ ହେଲେ । ଏହି ଅନ୍ୟାୟ ଆଦେଶର ଦୃଢ଼ ପ୍ରତିରୋଧ କରିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ ।

ଏହାର ପରିଣତି ଯୁଧିଷ୍ଠିର ରାଜ କାର୍ଯ୍ୟ ଶେଷ କରି ଘରକୁ ବାହାରିଛନ୍ତି ଏହି ସମୟରେ ବିଦୁର ଖବର ଦେଲେ, ତାଙ୍କୁ ଧୃତରାଷ୍ଟ୍ର ଡକାଇ ପଠାଇଛନ୍ତି

ସେତେବେଳକୁ ଯୁଧିଷ୍ଠିର ଖାଇ ନ ଥାନ୍ତି, ତଥାପି ସେ ରାଜାଦେଶ ପାଳନ କଲେ । ଅନ୍ୟ କେହି ହୋଇଥିଲେ ସେ ସେହି ଆଦେଶ ଅବଜ୍ଞା କରିପାରିଥାନ୍ତେ । ଯୁଧିଷ୍ଠିର କିନ୍ତୁ ସେପରି ବ୍ୟକ୍ତି ନ ଥିଲେ । ଧୃତରାଷ୍ଟ୍ର ତାଙ୍କ ପିତାଙ୍କର ବଡ଼ ଭାଇ ହେଲେ ମଧ୍ୟ ସେ ତାଙ୍କୁ ନିଜ ପିତାପରି ଦେଖୁଥିଲେ, ସମ୍ମାନ ଦେଉଥିଲେ । ତେଣୁ ସେ ଆଜ୍ଞା ଅବଜ୍ଞା କରିପାରିଲେ ନାହିଁ । ଧୃତରାଷ୍ଟ୍ରଙ୍କ ନିକଟରେ ଉପସ୍ଥିତ ହୋଇ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ସଞ୍ଜୟ ଜଣାଇଦେଲେ ଯୁଧିଷ୍ଠିର ପ୍ରଣିପାତ କରୁଛନ୍ତି । ଧୃତରାଷ୍ଟ୍ର ତାଙ୍କୁ ଆଶୀର୍ବାଦ କରି ବସିବା ପାଇଁ କହିଲେ ।

ତାପରେ ଆରମ୍ଭ କଲେ, ବାବୁ ବଡ଼ ଅସମୟରେ ତୁମକୁ ଡକାଇ ପଠାଇଲି । ଅବସ୍ଥା ବର୍ତ୍ତମାନ ଖୁବ ଗୁରୁତର, ସେହି କଥା ଜଣାଇ ଦେବାକୁ ଡକାଇ ପଠାଇଛି ।

ଆଦେଶ କରନ୍ତୁ, ମୁଁ ମାନିବାକୁ ପ୍ରସ୍ତୁତ—ଯୁଧିଷ୍ଠିର ବିନୀତ ଭାବରେ ଜଣାଇଲେ । କଣ କରିବେ, କିପରି ଏହି ଅନ୍ୟାୟ ପ୍ରସ୍ତାବ ଯୁଧିଷ୍ଠିରଙ୍କୁ ଜଣାଇବେ—ତାଙ୍କର ପାଟି

ଝିନ ମାରି ଯାଉଥାଏ । ଯୁଧିଷ୍ଠିର ତାଙ୍କର ମନକଥା ବୁଝିଲେ, କୌଣସି କଥା କହିବାକୁ ସେ ଚେଷ୍ଟା କରୁଛନ୍ତି, ମାତ୍ର ପାରୁ ନାହାନ୍ତି ଏହାମଧ୍ୟ ହୃଦୟଙ୍ଗମ କଲେ ।

ତାପରେ ସେ ସାହସ କରି କହିଲେ ପିତା, ଆପଣଙ୍କ ମନ କଥା ଖୋଲି କହି ଦିଅନ୍ତୁ, ଯାହା ଆଦେଶ ଦେବାର ଦିଅନ୍ତୁ, ମୁଁ ତାହା ଆନନ୍ଦରେ ପାଳନ କରିବି ।

ଧୃତରାଷ୍ଟ୍ର ନିଜ ହୃଦୟକୁ କଠିନ କରି ଆରମ୍ଭ କଲେ—

ଜାଣିତ ବାବୁ ଦୁର୍ଯ୍ୟୋଧନଙ୍କ କଥା ତାର ଦୁଷ୍ଟ ପ୍ରକୃତି ମଧ୍ୟ କାହାରିକୁ ଅଛପା ନାହିଁ—କିଏ ଗୋଟେ ଗୁଜବ ଶୁଣି ସେ ଉତ୍ତ୍ୟକ୍ତ ହୋଇପଡ଼ିଛି ।

ଅତି ବିନମ୍ର ସହିତ ଯୁଧିଷ୍ଠିର କହିଲେ ହଁ, ମୁଁ ମଧ୍ୟ ତାହା ଶୁଣିଛି—ପ୍ରଚାର ହୋଇଛି ଆମ୍ଭେମାନେ ଆପଣଙ୍କୁ ରାଜଗାଦିରୁ ବିତାଡ଼ିତ କରିବାକୁ ଏବଂ ଆପଣଙ୍କ ପୁତ୍ର ମାନଙ୍କୁ ତାଙ୍କ ରାଜ୍ୟ ଦାବୀରୁ ବଞ୍ଚିତ କରିବାକୁ ଷଡ଼ଯନ୍ତ୍ର କରୁଛୁ, ଏୟାତ ।

ହଁ ହଁ ଠିକ୍ ସେଇ କଥା, ଧୃତରାଷ୍ଟ୍ର ଉତ୍ତର ଦେଲେ ।

ଯୁଧିଷ୍ଠିର କହିଲେ ଏ ଗୁଜବ ସମ୍ପୂର୍ଣ୍ଣ କପୋଳକଳ୍ପିତ । ଏପରି ଚକ୍ରାନ୍ତ କରିବା ଦୂରେ ଥାଉ ଏହା ଆମ୍ଭମାନଙ୍କର ସ୍ୱପ୍ନର ଅତୀତ । ଆପଣ କଣ ଏହା ବିଶ୍ୱାସ କରୁଛନ୍ତି ? 'କଦାପି ନୁହେଁ । ତୁମର ପରି ଧର୍ମପରାୟଣ, ନ୍ୟାୟପରାୟଣ ଯୁବକ ଏପରି ଚକ୍ରାନ୍ତ କରିପାରେ—ମୁଁ କଦାପି ବିଶ୍ୱାସ କରେ ନାହିଁ, ତଥାପି ତୁମେ ତ ଜାଣ ଦୁର୍ଯ୍ୟୋଧନଙ୍କ ମୁଣ୍ଡରେ ଗୋଟେ ବିଷୟ ପଶିଲେ ସେ ତାହା ଛାଡ଼ିବା କଷ୍ଟକର । ତାକୁ ସନ୍ତୁଷ୍ଟ କରିବା ପାଇଁ, ଅନୁଚିତ ଭ୍ରାତୃ ବିବାଦ ଏଡ଼ାଇବା ଉଦ୍ଦେଶ୍ୟରେ ମୋର ଗୋଟିଏ ପ୍ରସ୍ତାବ ରକ୍ଷାକରିବ, ଥରଥର କଣ୍ଠରେ ରାଜା ପଚାରିଲେ । ଆନନ୍ଦରେ ପ୍ରକାଶ କରନ୍ତୁ ତାହା କଣ ।

ମୋର ଇଚ୍ଛା ତୁମେ ପାଞ୍ଚଭାଇ ମାତାଙ୍କ ସହିତ କିଛି ଦିନ ପାଇଁ ଯାଇ ବାରୁଣାବନ୍ତକୁ ଯାଆନ୍ତ, ହସ୍ତିନାପୁରରେ ତୁମ୍ଭ ମାନଙ୍କ ସାମୟିକ ଅନୁପସ୍ଥିତି ପରିସ୍ଥିତି ସୁଧାରିବାରେ ବହୁତ ସାହାଯ୍ୟ କରନ୍ତା । ବାରୁଣାବନ୍ତ ଏକ ମନୋରମ ସ୍ଥାନ । କିଛି ଦିନ ପରେ ସେଠାରେ ଦେବ ଦେବ ମହାଦେବଙ୍କର ପୂଜା ଅନୁଷ୍ଠିତ ହେବ । ତୁମ୍ଭେମାନେ ସେଠାରେ ଅନେକ ପୂଜାପର୍ବ ଦେଖିବାର ସୁଯୋଗ ପାଆନ୍ତ । ଆଉ ମଧ୍ୟ ହସ୍ତିନାପୁରର ବର୍ତ୍ତମାନର ଉତ୍ତେଜନା ପୂର୍ଣ୍ଣ ପରିସ୍ଥିତି କେତେକ ପରିମାଣରେ ଶାନ୍ତହୋଇ ଯାଆନ୍ତା । ହଁ, ତୁମ୍ଭ ମାନଙ୍କର ରହିବା ପାଇଁ ସେଠାରେ ମଧ୍ୟ ଗୋଟିଏ ସୁନ୍ଦର ପ୍ରାସାଦ ନିର୍ମିତ ହୋଇଛି । ମୋର ବିଶ୍ୱାସ ସେଠାରେ ରହିବା ଚାଲିବାରେ ତୁମ୍ଭମାନଙ୍କର କୌଣସି ଅସୁବିଧା ହେବ ନାହିଁ- ଏକା ନିଶ୍ୱାସରେ ଏତିକି କହିଦେଇ ଧୃତରାଷ୍ଟ୍ର ଉତ୍ତର ଅପେକ୍ଷାରେ ରହିଲେ ।

ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ । ଆପଣ ପିତାମହଙ୍କ ଅନୁମତି ନେଇ ମୋତେ ହସ୍ତିନାପୁରର ଯୁବରାଜ ପଦରେ ଅଭିଷିକ୍ତ କରିଥିଲେ । ବର୍ତ୍ତମାନ ଆପଣ ଯେତେବେଳେ ଚାହୁଁଛନ୍ତି ମୁଁ ସେ ପଦବୀ ଆନନ୍ଦରେ ପରିତ୍ୟାଗ କରି ଭାଇ ଓ ମାଙ୍କ ସହିତ ବାରୁଣାବନ୍ତ ଯିବାପାଇଁ ପ୍ରସ୍ତୁତ ଅଛୁ । ଏହାଦ୍ୱାରା ଭାଇ ଭାଇମାନଙ୍କ ମଧ୍ୟରେ ଯଦି ସଦ୍‌ଭାବ ପ୍ରତିଷ୍ଠିତ ହୁଏ, ସେମାନଙ୍କ ମଧ୍ୟରେ ଶାନ୍ତି ଆସେ ଏବଂ ଆମ ବଂଶର ମହାନ୍ ଗୌରବ ରକ୍ଷା କରିବା ଦିଗରେ ସହାୟକ ହୁଏ, ତେବେ ମୁଁ ଏଥିରେ ଅମତ ହେବି କାହିଁକି ? ବରଂ ଆନନ୍ଦରେ ହସ୍ତିନାପୁର ଛାଡ଼ି ଚାଲିଯିବି ।

ଧୃତରାଷ୍ଟ୍ର ଆଶ୍ୱସ୍ତ ହେଲେ । ତଥାପି ତାଙ୍କର ସନ୍ଦେହ ଗଲାନାହିଁ । କଥାଟାକୁ ପକ୍‌କା କରିନେବାପାଇଁ ସେ କହିଲେ, ମୁଁ ଜାଣେ ତୁମପରି ଯୁବକ କଦାପି ଅବାଧ୍ୟ ହୋଇନପାରେ । ତେବେ ଏଥିରେ ତୁମ ଭାଇମାନେ କଣ ରାଜି ହେବେ ?

ସେ ବାବଦରେ ଆପଣ ନିଶ୍ଚିନ୍ତ ରହନ୍ତୁ । ସେମାନଙ୍କୁ ରାଜି କରାଇବାର ଭାର ମୋ ଉପରେ । ଆପଣ ନିଃସନ୍ଦେହ ରହନ୍ତୁ ।

ଏହାପରେ ସାଷ୍ଟାଙ୍ଗ ପ୍ରଣିପାତ କରି ଯୁଧିଷ୍ଠିର ବିଦାୟ ନେଲେ । ଧୃତରାଷ୍ଟ୍ର ଭାବୁଥାନ୍ତି ଏ ମନୁଷ୍ୟ ନା ଦେବତା !

ଯୁଧିଷ୍ଠିର ଫେରିଆସି ଏହି ନୂତନ ପ୍ରସ୍ତାବ ଭାଇମାନଙ୍କୁ ଜଣାଇଦେଲେ । ପ୍ରଥମେ ଭୀମ ଅର୍ଜୁନ ଏଥିରେ ରାଜି ହୋଇ ନ ଥିଲେ, ମାତ୍ର ସେମାନେ ଯେତେବେଳେ ଜାଣିଲେ ବଡ଼ ଭାଇ ଏଥିରେ ସମ୍ମତ ଦେଇ ଆସିଛନ୍ତି ସେମାନେ ଆଉ କୌଣସି ବିରୋଧ କଲେ ନାହିଁ । ପାଣ୍ଡଭାଇ ଓ ମାତା କୁନ୍ତୀ ହସ୍ତିନାପୁର ଛାଡ଼ି ବାରୁଣାବନ୍ତ ପ୍ରସ୍ଥାନ କଲେ ।

ଏହି ଘଟନାରୁ ଯୁଧିଷ୍ଠିରଙ୍କ ଚରିତ୍ରର ମହତ୍ତ୍ୱ ଜଣାଯାଏ । ଶାନ୍ତି ପାଇଁ ସେ କିପରି ଚରମ ତ୍ୟାଗ ପାଇଁ ପ୍ରସ୍ତୁତ ଏହା ତାହାର ସାକ୍ଷର ବହନ କରେ ।

ଏଠାରେ ସ୍ୱତଃ ପ୍ରଶ୍ନ ଉଠିପାରେ ଭୀମ, ଅର୍ଜୁନ ପ୍ରଭୃତି ଭାଇମାନେ ବଡ଼ ଭାଇଙ୍କ ସହିତ ଏକମତ ହେଲେ କାହିଁକି ? ଇଚ୍ଛା କରିଥିଲେ ସେମାନେ ଏହାର ବିରୋଧ କରି-ପାରିଥାନ୍ତେ ।

ସାନ ଭାଇମାନେ ବଡ଼ ଭାଇଙ୍କର ଯେକୌଣସି କଥା କାହିଁକି ଆନନ୍ଦରେ ମାନି ଯାଉଥିଲେ ଏହାର କାରଣ ଅଛି । କୁନ୍ତୀଦେବୀ ପାଣ୍ଡୁପୁଅଙ୍କୁ ଯତ୍ନର ସହିତ ପାଳିଥିଲେ ଏବଂ ସେମାନଙ୍କୁ କହିଥିଲେ ଯେ ସେମାନେ ଜ୍ୟେଷ୍ଠଙ୍କର କଥା ସବୁବେଳେ ମାନିବେ । କୌଣସି ପରିସ୍ଥିତିରେ ତାଙ୍କର ଅବାଧ୍ୟ ହେବେ ନାହିଁ । ଭାଇମାନେ ଏଥିରେ ନିର୍ଭର

ପ୍ରତିଶ୍ରୁତି ଦେଇଥିଲେ ଆଉ ମଧ୍ୟ ଜ୍ୟେଷ୍ଠଭ୍ରାତାଙ୍କୁ ମାନିବା ସଙ୍ଗେ ସଙ୍ଗେ ମାତାଙ୍କର ଆଦେଶ ପାଳନ କରିବା ପାଇଁ ଅଙ୍ଗୀକାରବଦ୍ଧ ହୋଇଥିଲେ ।

ପାଣ୍ଡବ ପାଞ୍ଚଭାଇ କୁନ୍ତୀଦେବୀଙ୍କ ସହିତ ବାରୁଣାବନ୍ତ ଗଲେ । ସେଠାରେ ସେମାନଙ୍କର ରହିବା ପାଇଁ ଯେଉଁ ପ୍ରାସାଦ ନିର୍ମିତ ହୋଇଥିଲା ସେଥିରେ ଲାଖ ଚୂଣ, ଘୋଷ ପ୍ରଭୃତି ଦାହ୍ୟ ପଦାର୍ଥ ବ୍ୟବହୃତ ହୋଇଥିଲା । ଏହାର ଉଦ୍ଦେଶ୍ୟ, ପାଣ୍ଡବମାନେ ମାତାଙ୍କ ସହିତ ସେଥିରେ ଅବସ୍ଥାନ କରୁଥିଲାବେଳେ ଘରେ ନିଆଁ ଲଗେଇଦେବା, ଆଉ ସେମାନଙ୍କୁ ଜୀବନ୍ତ ଦଗ୍ଧ କରିବା ।

ଏହି ଯୋଜନା କାର୍ଯ୍ୟକାରୀ ହେଲା । ଦିନେ ରାତିରେ ପାଞ୍ଚଭାଇ ମାତାଙ୍କ ସହିତ ପ୍ରାସାଦରେ ଶୋଇଥିଲାବେଳେ ସେଥିରେ ନିଆଁ ଲଗାଇ ଦିଆଗଲା । ମନ୍ତ୍ରୀ ବିଦୁର ଥିଲେ ପାଣ୍ଡବମାନଙ୍କର ସାହାଯ୍ୟକାରୀ । ସେ ସମସ୍ତଙ୍କ ଅଜ୍ଞାତରେ ଏହି ଦାରୁଣ ବିପଦରୁ ପାଣ୍ଡବମାନଙ୍କୁ ରକ୍ଷା କରିବାପାଇଁ ପ୍ରାସାଦ ମଧ୍ୟରୁ ଗଙ୍ଗାନଦୀକୂଳ ପର୍ଯ୍ୟନ୍ତ ଏକ ସୁଡ଼ଙ୍ଗ ନିର୍ମାଣ କରାଇଥିଲେ । ଉଦ୍ଦେଶ୍ୟ ପ୍ରାସାଦ ଦଗ୍ଧୀଭୂତ ହେଲାବେଳେ ସେମାନେ ସେହି ସୁଡ଼ଙ୍ଗ ପଥଦେଇ ବାହାରିଯିବେ । ତାହାହିଁ ହୋଇଥିଲା । ଅଗ୍ନି ନିର୍ବାପିତ ହେବାପରେ ଦେଖାଗଲା ସେଠାରେ ପାଞ୍ଚଟି ଶବ । ଅଗ୍ନିଦଗ୍ଧ ଶବ ଗୁଡ଼ିକୁ ଚିହ୍ନିବା ସମ୍ଭବ ନଥିଲା । ତେଣୁ ପ୍ରଚାର କରାଗଲା, ଦୁର୍ଭାଗ୍ୟବଶତଃ ପାଣ୍ଡବ ପାଞ୍ଚଭାଇ ସେମାନଙ୍କ ମାତାଙ୍କ ସହିତ ପ୍ରାଣ ହରାଇଛନ୍ତି । ପ୍ରକୃତରେ ସେଦିନ ତାଙ୍କଘରକୁ ଅତିଥି ହୋଇ ଆସିଥିବା ଏକ ପରିବାର ଅଗ୍ନିରେ ଦଗ୍ଧ ହୋଇଥିଲେ ଓ କୁନ୍ତୀଙ୍କ ସହ ପାଞ୍ଚଭାଇ ସୁଡ଼ଙ୍ଗ ଦେଇ ବାହାରିକୁ ଚାଲି ଆସିଥିଲେ ।

ହସ୍ତିନା ପୁରରେ ସେମାନଙ୍କର ପ୍ରେତକୃତ୍ୟ ଯଥାବିଧି ସମ୍ପନ୍ନ ମଧ୍ୟ ହୋଇଗଲା । ପାଣ୍ଡବମାନେ ଯେ ପ୍ରକୃତରେ ମରି ନାହାନ୍ତି । ଏହି ବିପଦରୁ ରକ୍ଷା ପାଇଯାଇଛନ୍ତି ଏହା ଜଣେ ଦୁଇଜଣ ବ୍ୟକ୍ତି ଅନ୍ୟ କେହି ଜାଣି ନଥିଲେ ।

ଏହି ଘଟନା ପରେ ପାଣ୍ଡବମାନଙ୍କର ଭିକ୍ଷୁକ ଜୀବନର ଅସ୍ଥିମାରମ୍ଭ ହେଲା । ସେମାନେ ଏକଚକ୍ର ନଗରୀରେ ଭିକ୍ଷା କରି ଜୀବନ ଯାପନ କଲେ ।

### ରାଜସୂୟ ଯଜ୍ଞ

ଭାଗ୍ୟଚକ୍ରର ପରିବର୍ତ୍ତନ-ଅଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର ବନେ । ଯେଉଁ ଯୁଧିଷ୍ଠିର ହସ୍ତିନାର ରାଜପ୍ରାସାଦରେ ସ୍ୱର୍ଗୀୟ ସୁଖ ଉପଭୋଗ କରୁଥିଲେ ସେ ଅଜି ଏକଚକ୍ରପୁରର ଦରିଦ୍ର କୁଟୀରରେ । ଭିକ୍ଷାନ୍ନ ତାଙ୍କର ଆହାର, ମୃତ୍ତିକା ତାଙ୍କର ଶଯ୍ୟା, ସକାଳ ହେଲେ ଭାଇମାନେ ବ୍ରାହ୍ମଣ ବେଶରେ ଭିକ୍ଷା କରିବାକୁ ଯାଆନ୍ତି, ବ୍ରାହ୍ମଣ ସାହିରେ ଦ୍ୱାରେ ଦ୍ୱାରେ ଭିକ ମାଗନ୍ତି ଯାହାମିଳେ ସେଥିରେ ସନ୍ତୁଷ୍ଟ ହୋଇ ଘରକୁ ଫେରନ୍ତି ।

କୁନ୍ତୀ ଅତ୍ୟନ୍ତ ସନ୍ତାନ ବତ୍ସଳା ! ପୁତ୍ରମାନଙ୍କର ଆଗମନକୁ ଚାହିଁ ରହିଥାନ୍ତି । ସେମାନଙ୍କର ଫେରିବାରେ ଟିକିଏ ବିଳମ୍ବ ହେଲେ କେତେ ଦୁଶ୍ଚିନ୍ତା ତାଙ୍କୁ ଅସ୍ଥିର

କରିପକାଏ । ଦୁଃଅରକୁ ଘର ହୋଇଥାନ୍ତି । ପୁଅମାନେ ଫେରିଲେ ତାଙ୍କର ପିଣ୍ଡରେ ପ୍ରାଣ ପଶେ । ଯାହା ଭିକ୍ଷା ମିଳିଥାଏ ତାହା ରାନ୍ଧି ପୁଅମାନଙ୍କୁ ପରଷି ଦିଅନ୍ତି । ନିଜପାଇଁ ଯଦି କିଛି ବଳେ ତ ଭଲ ନ ବଳିଥିଲେ ଚିନ୍ତା ନାହିଁ ।

ଏହି ପରି ଦିନ କଟି ଯାଉଥାଏ । ପୁଣି ରଙ୍ଗୀନ୍‌ପଟରେ ପରିବର୍ତ୍ତିନ ଚଳଚ୍ଚିତ୍ରର ବୁଯେଲ୍ ପରଦାରେ ଦୃଶ୍ୟରାଜିର ପରିବର୍ତ୍ତନ ହେଲା ଭଳି ।

ଏହି ସମୟରେ ପାଞ୍ଚାଳର ରାଜା ଦ୍ରୁପଦଙ୍କ କନ୍ୟା ଦ୍ରୌପଦୀଙ୍କର ସ୍ୱୟମ୍ବର ହେଉଥାଏ । ମାତାଙ୍କ ସହିତ ପାଣ୍ଡବମାନେ ସେ ରାଜ୍ୟରେ ଉପସ୍ଥିତ ହୋଇ ଜଣେ କୁମ୍ଭାରର ଘରେ ଆଶ୍ରୟ ନେଇଥାନ୍ତି । ଉଦ୍ଦେଶ୍ୟ, ଯେତେବେଳେ ଏତେ ବଡ଼ ସ୍ୱୟମ୍ବର ଅନୁଷ୍ଠିତ ହେଉଛି ସେମାନଙ୍କୁ ପ୍ରଚୁର ଭିକ୍ଷା ମିଳିବ ଆଉ ମଧ୍ୟ ସେମାନେ ଏହି ଉତ୍ସବ ଦେଖି ପରିତୃପ୍ତ ହେବେ ।

ସ୍ୱୟମ୍ବର ଦିନ ସଭାରେ କେତେ ଦେଶରୁ କେତେ ରାଜା ଉପସ୍ଥିତ ହୋଇଥାନ୍ତି । ସେମାନଙ୍କ ମଧ୍ୟରେ ଥାନ୍ତି ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ, ଶଲ୍ୟ, ଅଶ୍ୱତ୍ଥାମା, ଜରାସନ୍ଧ ଏହିପରି ଆଉ କେତେ ବଡ଼ ବଡ଼ ରାଜା, କେତେ ବଡ଼ ବଡ଼ ବୀର ।

ସ୍ୱୟମ୍ବର ସଭାକୁ ଦ୍ରୌପଦୀ ଆସିଲେ । ସାଙ୍ଗରେ ଆସନ୍ତି ତାଙ୍କର ଭାଇ ଧୃଷ୍ଟଦ୍ୟୁମ୍ନ । ସେ ପିତାଙ୍କର ପଣ ଘୋଷଣା କଲେ । ଯେଉଁ କୁଳୀନ ବୀର ଲକ୍ଷ୍ୟ ଭେଦ କରିପାରିବେ ଦ୍ରୌପଦୀ ତାଙ୍କୁ ନିଜ ସ୍ୱାମୀରୂପେ ବରଣ କରିବେ । କି ଅସାଧ୍ୟ ସେ ଲକ୍ଷ୍ୟଭେଦ ! ଗୋଟିଏ ସ୍ତମ୍ଭ ପୋତା ହୋଇଛି । ତା ଉପରେ ଚକ ଘାଇଁ ଘାଇଁ ବୁଲୁଛି । ଚକ ଉପରେ ମାଛ ରହିଛି । ସ୍ତମ୍ଭ ମୂଳେ ଖୁବ ବଡ଼ ପାଣିକୁଣ୍ଡ । ମାଛର ଛାଇ ସେଥିରେ ପଡ଼ୁଛି । ଯେଉଁ ଧନୁର୍ଦ୍ଧାରୀ ବୀର ପାଣିରେ ମାଛ ଛାଇକୁ ଦେଖି ଶର ମାରି ସତ ମାଛର ଆଖି ଭେଦ କରି ଦେଇପାରିବେ ସେ ହେବେ ବିଜୟୀ ।

କେତେ ବୀର ଆସିଲେ କେହି ପାରିଲେ ନାହିଁ । ଶେଷକୁ ଲକ୍ଷ୍ୟଭେଦ କରିବାକୁ ଆସିଲେ ଜଣେ ବ୍ରାହ୍ମଣ ଯୁବକ । ତାଙ୍କୁ ଦେଖି କେହି କେହି ଅଟ୍ଟାହସିଲେ, କହିଲେ ଖିଲ ଖିଲପତ ଗଗନେ ଉଡ଼ୁଛି ଖିମିଲି ଗୁଳା କହୁଛି ମୋତେ ରଖ । ପୁଣି ଅଭି କେହି କେହି ବ୍ରାହ୍ମଣ ଯୁବକ ଠାଣିମାଣିକୁ ଜାଣିଲେ ସେ ଏହି ଲକ୍ଷ୍ୟ ଭେଦ କରିପାରନ୍ତି ।

ଆଶ୍ଚର୍ଯ୍ୟ କଥା । ଏହି ବ୍ରାହ୍ମଣ ଯୁବକ ଅକ୍ଲେଶରେ ଧନୁରେ ଶର ସଂଯୋଗକରି ଆଖି ପିଛୁଳାକେ ଲକ୍ଷ୍ୟ ଭେଦ କରିଦେଲେ । ସଭାରେ ଭୁମୁଳ କାଣ୍ଡ ଘଟିଲା । କେହି କେହି ରାଜା ଆସନରୁ ଉଠିଆସି ଦୃଢ଼ ସ୍ୱରରେ ଘୋଷଣା କଲେ ଏହି ସ୍ୱୟମ୍ବର ସଭା କ୍ଷତ୍ରିୟ-ମାନଙ୍କ ପାଇଁ ବ୍ରାହ୍ମଣମାନଙ୍କର ଏଠାରେ ସ୍ଥାନ ନାହିଁ । ଏ ବିବାହ ଆମେ ବଳପୂର୍ବକ ବନ୍ଦ କରିଦେବୁ । ଏହି ରାଜାମାନଙ୍କ ସହିତ କ୍ରମେ କ୍ରମେ ଅନ୍ୟ ରାଜାମାନେ ଯୋଗଦେଲେ ।

ଗ୍ଲେଷ୍ଟକାଟିଆ ଯୁଦ୍ଧ ଲାଗିଯିବାର ଆଶଙ୍କା ଦେଖାଦେଲା, ମାତ୍ର ଯେତେବେଳେ ଜଣେ ପଣ୍ଡିତ ଲକ୍ଷ୍ୟଭେଦକାରୀ ହେଉଛନ୍ତି ସ୍ୱୟଂ ଅର୍ଜୁନ ଲୋକ ମୁହଁରେ ଲୁଣ ଦେଲାପରି ସମସ୍ତେ ଚୁପ୍ ହୋଇଗଲେ ।

ଏହାପରେ ଗୌରବର ବାନା ଉଡ଼ାଇ ପାଣ୍ଡବମାନେ ପୁନର୍ଜନ୍ମ ଲାଭ କଲେ । ଦୁର୍ଯ୍ୟୋଧନଙ୍କ ମୁହଁ କଳାପଡ଼ିଗଲା । ତାଙ୍କର ସମସ୍ତ ଅପଚେଷ୍ଟା ବୃଥା ହୋଇଗଲା । ପାଣ୍ଡବମାନଙ୍କୁ ବିନାଶ କରିବାକୁ ସେ ଯେତେ ଚେଷ୍ଟା କରୁଛନ୍ତି ସେମାନେ ସେତିକି ବଳଶାଳୀ ହୋଇ ଉଭା ହେଉଛନ୍ତି । ଭାଗ୍ୟର କି ବିଡ଼ମ୍ବନା !

ପାଣ୍ଡବମାନେ ଜୀବିତ ଅଛନ୍ତି ପୁଣି ଦ୍ରୌପଦୀଙ୍କୁ ବିବାହ କରିବା ଦ୍ୱାରା ପାଞ୍ଚାଳ ପରି ଏକ ଶକ୍ତିଶାଳୀ ରାଜ୍ୟର ଦୃଢ଼ ସମର୍ଥନ ଲାଭ କରିଅଛନ୍ତି । ଏହି ସୁଖସମ୍ବାଦ ହସ୍ତିନା-ପୁରରେ ସୃଷ୍ଟି କଲା ଆନନ୍ଦର ଲହରୀ । ଭୀଷ୍ମ, ଦ୍ରୋଣ ପ୍ରଭୃତି ବିଶିଷ୍ଟ ବ୍ୟକ୍ତି ଏଥିରେ ପରମ ପରିତୋଷ ଲାଭ କଲେ । ଧୃତରାଷ୍ଟ୍ର ବାହାରେ ଆନନ୍ଦ ପ୍ରକାଶ କଲେ ମଧ୍ୟ ପୁଣି ସେ ତାଙ୍କର ସନ୍ତାନମାନଙ୍କ ପ୍ରତି ଘୋର ବିପଦ ଉପସ୍ଥିତ ଏହା ବିଚାରି ମନେ ମନେ ସନ୍ତୁଳ ହେଲେ । ଭୀଷ୍ମ, ଦ୍ରୋଣ ଓ ଅନ୍ୟାନ୍ୟ କୁରୁ ମୁଖ୍ୟମାନେ ସ୍ଥିର କଲେ, ପାଣ୍ଡବମାନଙ୍କୁ ସମ୍ମାନର ସହିତ ହସ୍ତିନାପୁରକୁ ଆଣି ଯୁଧିଷ୍ଠିରଙ୍କୁ ରାଜପଦରେ ଅଭିଷିକ୍ତ କରିବା ପାଇଁ । ଏହାଶୁଣି ଦୁର୍ଯ୍ୟୋଧନଙ୍କର ଗାତ୍ର ଦାହ ହେଲା । ସେ ତାଙ୍କର ବନ୍ଧୁମାନଙ୍କର ସହିତ ଏ ପ୍ରସ୍ତାବର ପ୍ରବଳ ପ୍ରତିରୋଧ କଲେ ମାତ୍ର ସବୁ ନିଷ୍ଫଳ ହେଲା । ଯୁଧିଷ୍ଠିର ହସ୍ତିନାର ରାଜସିଂହାସନ ଆରୋହଣ କଲେ ।

ରାଜପଦରେ ଅଭିଷିକ୍ତ ହେବାପରେ ସେ ନିଜର ମନୋଭାବ ଯେପରି ପ୍ରକାଶ କଲେ ସେଥିରୁ ତାଙ୍କର ଧୃତରାଷ୍ଟ୍ରଙ୍କ ପ୍ରତି କିପରି ଅଚଳ ଭକ୍ତି ଥିଲା ତାହା ଜଣାଯାଏ ।

ଗୁରୁଜନମାନଙ୍କ ଉଦ୍ଦେଶ୍ୟରେ ବିନୀତ ପ୍ରଣାମ ଜଣାଇ ଯୁଧିଷ୍ଠିର କହିଲେ, "ଆପଣମାନେ ଆଜି ମୋ ଉପରେ ଯେଉଁ ଗୁରୁଦାୟିତ୍ୱର ଭାର ଲଦିଦେଲେ, ଯେଉଁ ଆସ୍ଥା ସ୍ଥାପନ କଲେ ତାହାର ଉପଯୁକ୍ତ ମୁଁ ହୁଏ ଏହାହିଁ ସର୍ବଶକ୍ତିମାନ ଈଶ୍ୱରଙ୍କ ନିକଟରେ ମୋର ଆନ୍ତରିକ ପ୍ରାର୍ଥନା ।

କୁରୁବଂଶର ଗୌରବ ରକ୍ଷାକରିବା ନିମିତ୍ତ ମୁଁ ଯଥାସାଧ୍ୟ ଚେଷ୍ଟା କରିବି । ମୋର ପୂର୍ବ ପୁରୁଷ ମହାନ୍ ଚକ୍ରବର୍ତ୍ତୀ ଭରତ ଯେଉଁ କୁରୁସାମ୍ରାଜ୍ୟ ପ୍ରତିଷ୍ଠା କରିଯାଇଅଛନ୍ତି ତାହା ମୁଁ ସମସ୍ତଙ୍କ ସାହାଯ୍ୟ ସହଯୋଗରେ ସୁରକ୍ଷା କରିବି ।

ସର୍ବଦା ଧର୍ମପଥରେ ନ୍ୟାୟପଥରେ, ରହି ମୁଁ ଏହି ସାମ୍ରାଜ୍ୟର ସେବାରେ ଉପଯୁକ୍ତ ସେବା କରିପାରିବି ସେଥିପାଇଁ ସର୍ବଶକ୍ତିମାନ ପରମେଶ୍ୱର ମୋତେ ଯଥେଷ୍ଟ ଶକ୍ତି ଓ ସାମର୍ଥ୍ୟ ଦିଅନ୍ତୁ ଏହାହିଁ ପ୍ରାର୍ଥନା ।

ପୂଜ୍ୟ ରାଜା, ଆପଣ ମୋର ପିତା ସଦୃଶ, ନା ପିତାଙ୍କଠାରୁ ଅଧିକ । ପୂଜ୍ୟ ପିତାମହ, ମୁଁ ଆପଣଙ୍କ ନିକଟରେ ଋଣୀ । ଆପଣଙ୍କ ଦୟାରୁହିଁ ମୋର ସମସ୍ତ ଉନ୍ନତ । ମୁଁ ଆପଣମାନଙ୍କ ସେବାରେ ମୋର ଏହି କ୍ଷୁଦ୍ର ଜୀବନ ଉତ୍ସର୍ଗ କଲି ।''

''ସାଧୁ ସାଧୁ'' ଶବ୍ଦରେ ସଭାଗୃହ ପ୍ରକମ୍ପିତ ହେଲା ।

''ପୂଜ୍ୟ ରାଜା, ଆପଣ ମୋର ପିତା । ଆପଣଙ୍କ ପୁତ୍ର ଆଉ ମୋ ମଧ୍ୟରେ କି ପ୍ରକାର ସମ୍ପର୍କ ରହିବ ସ୍ଥିର କରିଦିଅନ୍ତୁ । ରାଜ୍ୟ ଶାସନରେ କିଏ କି ପ୍ରକାର ଅଂଶଗ୍ରହଣ କରିବେ, କିଏ କେଉଁ ରାଜ୍ୟ ଶାସନ କରିବେ ସେ ବିଷୟରେ ଆପଣଙ୍କ ମତାମତ ପ୍ରକାଶ କରନ୍ତୁ ।

ଦୁର୍ଯ୍ୟୋଧନ କେବଳ ଯୁବରାଜ ଭାବରେ ରହିବେ ନାହିଁ—ସେ ମୋର ଭାଇ, ରାଜପଦରେ ଯଥାର୍ଥ ଅଂଶୀଦାର ହେବେ, ଏହା ମୋର ମତ । ତେଣୁ ଅମ୍ଭମାନଙ୍କର ପଦବୀରେ ଯେପରି କୌଣସି ଅସମାନତା ନ ରହେ ସେ ବିଷୟରେ ଆପଣଙ୍କ ନିଷ୍ପତ୍ତି ମୋର ଶିରୋଧାର୍ଯ୍ୟ ।

ମୁଁ ରାଜପଦରେ ଅଭିଷିକ୍ତ ହେଲେ ମଧ୍ୟ ଆପଣଙ୍କର ଯେକୌଣସି ଆଦେଶ ପାଳନ କରିବା ନିମିତ୍ତ ମୁଁ ପ୍ରତିଶ୍ରୁତିବଦ୍ଧ ।''

ଏହାପରେ ଧୃତରାଷ୍ଟ୍ର କିଛି କହିବା ପାଇଁ ଦଣ୍ଡାୟମାନ ହେଲେ—କଣ୍ଠ ବାଷ୍ପରୁଦ୍ଧ । ତାଙ୍କର ଅନ୍ତରର ଇଚ୍ଛା ପୂର୍ଣ୍ଣ ହେବାକୁ ଯାଉଛି, ସେ କି ନିଷ୍ପତ୍ତି ଦେବେ ଏହାଶୁଣିବା ପାଇଁ ସମସ୍ତେ ଉଦ୍‌ଗ୍ରୀବ । ସେ ଯଥେଷ୍ଟ ଶକ୍ତି ସଞ୍ଚୟ କରି କହିଲେ ।

"ବାବା, ଯୁଧିଷ୍ଠିର, ତୁମେ ଆଜି ମୋ ଉପରେ ଏକ ଗୁରୁଦାୟିତ୍ୱ ଅର୍ପଣ କରିଛ । ଦୁର୍ଯ୍ୟୋଧନ ଓ ତୁମ୍ଭମାନଙ୍କ ମଧ୍ୟରୁ କିଏ କେଉଁ କେଉଁ ରାଜ୍ୟରେ ରାଜତ୍ୱ କରିବ ତାହା ସ୍ଥିର କରିବା ପାଇଁ ମୋତେ ଭାର ଦେଇଛ । ମୋ ବିଚାରରେ ଦୁର୍ଯ୍ୟୋଧନ ହସ୍ତିନା-ପୁରରେ ରାଜତ୍ୱ କରୁ ଓ ଆଉ ତୁମ୍ଭେ ତୁମମାନଙ୍କର ପ୍ରାଚୀନ ରାଜଧାନୀ ଖାଣ୍ଡବପ୍ରସ୍ଥର ଅଧୀଶ୍ୱର ହୁଅ । ଏତିକି କହି ସେ ଚୁପ୍ ହୋଇଗଲେ-ତାଙ୍କ ମୁହଁରୁ ଆଉ କଥା ବାହାରିଲା ନାହିଁ । ରାଜାଙ୍କର ଏହି ନିଷ୍ପତ୍ତିରେ ସମସ୍ତେ ଉତ୍କଣ୍ଠ । ଭୀମ, ଅର୍ଜୁନ ପ୍ରଭୃତି ସ୍ତମ୍ଭୀଭୂତ ।

ମାତ୍ର ଯୁଧିଷ୍ଠିରଙ୍କର ଚିନ୍ତାନାହିଁ, ଅବଶୋଷ ନାହିଁ । ନିଜର ପିତୃତୁଲ୍ୟ ରାଜା ଧୃତରାଷ୍ଟ୍ରଙ୍କ ଆଜ୍ଞା ସେ ପାଳନ କରିବେ । ବନଚର, ରାକ୍ଷସ ଅଧ୍ୟୁଷିତ ଖାଣ୍ଡବ ପ୍ରସ୍ଥର ସେ ରାଜା ହେବେ । ଏହାଦ୍ୱାରା ଭାଇ ଭାଇମାନଙ୍କ ମଧ୍ୟରେ ଯଦି ସଦ୍‌ଭାବ ପ୍ରତିଷ୍ଠିତ ହୁଏ ସେମାନଙ୍କ ମଧ୍ୟରେ ଯଦି ଶାନ୍ତି ବିରାଜମାନ କରେ ତେବେ ସେ ଆଶ୍ୱସ୍ତ ହେବେ । ଶାନ୍ତିରେ ନିଶ୍ୱାସ ମାରିବେ ।

ପ୍ରଥମେ ଭୀମ, ଅର୍ଜୁନ ପ୍ରଭୃତି ଜ୍ୟେଷ୍ଠଙ୍କର ଏହି ଆଚରଣରେ କ୍ଷୁବ୍ଧ ହୋଇଥିଲେ । ଏପରିକି ଭୀମ ରାଗରେ ସଭାଗୃହ ତ୍ୟାଗକରି ଚାଲି ଯାଇଥିଲେ । ପରେ

ଯୁଧିଷ୍ଠିର ଓ କୃଷ୍ଣଙ୍କର ଉଦ୍ୟମଫଳରେ ସମସ୍ତେ ପ୍ରକୃତରେ ସନ୍ତୁଷ୍ଟ ହେଲେ । ଜ୍ୟେଷ୍ଠଭ୍ରାତାଙ୍କ ଉପରେ ସେମାନଙ୍କର ଆଉ କୌଣସି ଗ୍ଲାନି ରହିଲା ନାହିଁ । ଦ୍ରୌପଦୀଙ୍କ ସହ ପାଣ୍ଡୁଭ୍ରାତା ଖାଣ୍ଡବ ପ୍ରସ୍ଥ ଅଭିମୁଖରେ ଶୁଭଯାତ୍ରା କଲେ । ସଙ୍ଗରେ ଥାଆନ୍ତି କୃଷ୍ଣ, ବଳରାମ, ବେଦବ୍ୟାସ, ଯାଦବ ଅତିରଥୀ, ହସ୍ତିନାପୁରର ଶତ ଶତ ବ୍ରାହ୍ମଣ କ୍ଷତ୍ରିୟ, ମହାଜନ, ମନ୍ତ୍ରି, ଧନୁର୍ଦ୍ଧାରୀବୀର ଶିଳ୍ପୀ ତଥା ସେମାନଙ୍କର ପରିବାରବୃନ୍ଦ । ମନେ ହେଉଥାଏ ସତେ ଯେପରି ଗୋଟିଏ ଚଳନ୍ତି ନଗରୀ ।

ପାଣ୍ଡବ ପାଞ୍ଚ ଭାଇଙ୍କର ଐକାନ୍ତିକ ଉଦ୍ୟମ, କୃଷ୍ଣ, ଦ୍ରୁପଦ ପ୍ରଭୃତିଙ୍କ ଅକୁଣ୍ଠ ସାହାଯ୍ୟ, ଭୀଷ୍ମ, ବେଦବ୍ୟାସଙ୍କର ସଦିଚ୍ଛା ଓ ଆଶୀର୍ବାଦ ଫଳରେ ଖୁବ୍ ଅଳ୍ପକାଳ ମଧ୍ୟରେ ଜଙ୍ଗଲ ଓ ହିଂସ୍ର ଜନ୍ତୁପୂର୍ଣ୍ଣ ଖାଣ୍ଡବପ୍ରସ୍ଥ ଏକ ସମୃଦ୍ଧିଶାଳୀ ନଗରୀରେ ପରିଣତ ହେଲା । କୃଷ୍ଣଙ୍କର ପରାମର୍ଶ କ୍ରମେ ଏହାର ନୂତନ ନାମ ହେଲା ଇନ୍ଦ୍ରପ୍ରସ୍ଥ । କାରଣ ଏହା ସ୍ୱର୍ଗର ଇନ୍ଦ୍ରପୁରୀର ସୌନ୍ଦର୍ଯ୍ୟ ଧାରଣ କରି ଥିଲା ।

ସତ୍ୟରେ ନ୍ୟାୟରେ ପାଣ୍ଡବମାନେ ଦୀର୍ଘ ଛତିଶ ବର୍ଷ ଇନ୍ଦ୍ରପ୍ରସ୍ଥରେ ରାଜତ୍ୱ କରିଥିଲେ । ଏହି ନଗରୀର ଅପୂର୍ବ ଶୋଭା, ଯୁଧିଷ୍ଠିରଙ୍କର ନ୍ୟାୟପୂର୍ଣ୍ଣ ଶାସନରେ ଏହା ଏକ ପ୍ରସିଦ୍ଧ ଧର୍ମକେନ୍ଦ୍ରରେ ପରିଣତ ହେଲା । କେବଳ ହସ୍ତିନାପୁରରୁ ନୁହେଁ ସାରା ଭାରତର ଭିନ୍ନ ଭିନ୍ନ ଅଞ୍ଚଳରୁ ଶତ ଶତ ବ୍ରାହ୍ମଣ, କ୍ଷତ୍ରିୟ, ମହାଜନ, ଶିଳ୍ପୀ, ଧର୍ମପ୍ରାଣ ବ୍ୟକ୍ତି ଆସି ଏହି ମନୋହର ନଗରୀରେ ବସବାସ କଲେ । କ୍ରମେ ଏହାର ଧନସମ୍ପଦ ବୃଦ୍ଧିଲାଭ କଲା । ସାରା ଆର୍ଯ୍ୟାବର୍ତ୍ତରେ ଏହାର ଗୌରବ ପ୍ରସାରିତ ହୋଇଗଲା ।

ପାଣ୍ଡବମାନେ ନାନା ବିପଦରୁ ଉଦ୍ଧାର ପାଇ ଶେଷରେ ସେମାନେ ଯେ ଇନ୍ଦ୍ରପ୍ରସ୍ଥରେ ସୁଶାସନ ଚଳାଇବାରେ ସମର୍ଥ ହୋଇଥିଲେ ଏବଂ ଏକ ଭୀଷଣ ଭ୍ରାତୃବିବାଦ ଏଡ଼ାଇ ଦେଇପାରିଥିଲେ ଏହା କେବଳ ସମ୍ଭବ ହୋଇଥିଲା ମାତା କୁନ୍ତୀଦେବୀଙ୍କ ସାଂସାରିକ ଜ୍ଞାନ ଯୋଗୁଁ । ଯେତେବେଳେ ଅତି ଶୈଶବାବସ୍ଥାରେ ହସ୍ତିନାପୁରକୁ ଆସିଲେ ସେ ପୁଅମାନଙ୍କଠାରୁ ଏକ ପ୍ରତିଶ୍ରୁତି ଆଦାୟ କରିନେଇଥିଲେ । ତାହାହେଲା ସେମାନଙ୍କୁ ଯେତେବେଳେ ଯାହାମିଳିବ ତାହା ସମାନଭାବରେ ଉପଭୋଗ କରିବେ, ଜ୍ୟେଷ୍ଠ ଭ୍ରାତାଙ୍କୁ ଅନ୍ୟ ଭାଇମାନେ ନିଜର ପିତାପରି ଗ୍ରହଣ କରିବେ । ଆଉ ଜ୍ୟେଷ୍ଠ କନିଷ୍ଠ ଭାଇମାନଙ୍କୁ ପିତୃତୁଲ୍ୟ ସ୍ନେହ କରିବେ । ବିପଦ ସମୟରେ ଯେତେବେଳେ ଜ୍ୟେଷ୍ଠ ଭ୍ରାତାଙ୍କର ଜୀବନ ସଙ୍କଟାପନ୍ନ ହେବ ସମସ୍ତେ ମିଳି ତାଙ୍କୁ ସେହି ବିପଦରୁ ରକ୍ଷା କରିବେ ।

ମୂଳତଃ ପରିବାର ସଭ୍ୟମାନେ ଯେପରି ଗୋଟିଏ ସୂତ୍ରରେ ଆବଦ୍ଧ ହେଲେ ଯାହା ଫଳରେ ବାହ୍ୟର ଉତ୍ଥାନପତନ ସେମାନଙ୍କ ମଧ୍ୟରେ କୌଣସି ବିଭେଦ ସୃଷ୍ଟି କରିପାରି ନଥିଲା । ବରଂ ସେମାନଙ୍କର ସଂହତିକୁ ସୁଦୃଢ଼ କରିଥିଲା ।

ସମସ୍ତର ରଥ ଗଡ଼ି ଚାଲିଥାଏ । ଇନ୍ଦ୍ରପ୍ରସ୍ଥରେ ପାଞ୍ଚ ଭାଇ ଦ୍ରୌପଦୀ ଓ କୁନ୍ତୀଙ୍କ ସହିତ ପରମ ଆନନ୍ଦରେ କାଳ କାଟୁଥାନ୍ତି ।

ଦିନକର କଥା । ଭାଇମାନେ ଏକତ୍ର ଖାଇ ବସିଥାନ୍ତି । କୁନ୍ତୀଦେବୀ ସ୍ୱହସ୍ତରେ ପୁଅମାନଙ୍କୁ ପରଷୁ ଥାନ୍ତି । ଏହି ସମୟରେ ଭୀମ ପ୍ରସ୍ତାବ କଲେ ଆମ୍ଭେମାନେ କ୍ଷତ୍ରିୟ । କେବଳ ଖାଇପିଇ ଶାନ୍ତିରେ ରହିଲେ ହେବ ନାହିଁ । ଆମକୁ କୌଣସି ଏକ ଯଜ୍ଞ ଅନୁଷ୍ଠାନ କରିବାକୁ ହେବ । ତାହା ବାଜପେୟ, ରାଜସୂୟ ବା ଅଶ୍ୱମେଧ ହୋଇପାରେ ।

ଭୀମଙ୍କ ପ୍ରସ୍ତାବରେ କୁନ୍ତୀଦେବୀ ଅବାକ୍ ହୋଇ ରହିଗଲେ । ସେ ଯେକୌଣସି ରକ୍ତପାତର ବିରୋଧୀ । ଏପରି ଏକ ଯଜ୍ଞ ଅନୁଷ୍ଠାନ କରିବାକୁ ହେଲେ ଅନେକ ରାଜ୍ୟ ଜୟ କରିବାକୁ ହେବ । ରାଜାମାନଙ୍କୁ ସ୍ୱାଗତ କରିବାକୁ ପଡ଼ିବ । ତଥାପି ସେ ଯଜ୍ଞାନୁଷ୍ଠାନ ପ୍ରସ୍ତାବ ପ୍ରତି ଆକୃଷ୍ଟହୋଇ ପଡ଼ିଲେ ଏବଂ କହିଲେ, ତାଙ୍କର ସ୍ୱାମୀ ଯେତେବେଳେ ଜୀବଦ୍ଦଶାରେ ଥିଲେ ସେ ଗୋଟିଏ ରାଜସୂୟ ଯଜ୍ଞ କରିବାପାଇଁ ମନସ୍ଥ କରିଥିଲେ । ଅବଶ୍ୟ ସେ ବହୁରାଜ୍ୟ ଜୟ କରିଥାନ୍ତେ, ଅନେକ ରାଜା ତାଙ୍କର ବଶ୍ୟତା ସ୍ୱୀକାର କରିଥାନ୍ତେ ମାତ୍ର ତାଙ୍କର କଳ୍ପନା କାର୍ଯ୍ୟରେ ପରିଣତ ହୋଇପାରିଲା ନାହିଁ ।

ମାତାଙ୍କର ଏହି ଅତୀତ ସ୍ମରଣ ପୁତ୍ରମାନଙ୍କୁ ଯଥେଷ୍ଟ ପ୍ରଭାବିତ କରିଥିଲା । ଏପରିକି ନିଜେ ଯୁଧିଷ୍ଠିର ଏଥିରେ ତାଙ୍କର ମତାମତ ଦେବାପାଇଁ ପ୍ରସ୍ତୁତ ହୋଇଯାଇ-ଥିଲେ ମାତ୍ର ସେଥିରୁ ସେ ନିବୃତ୍ତ ରହିଲେ । "ମା, ଆମ୍ଭ ପିତାଙ୍କର ଇଚ୍ଛା ଆମ୍ଭେମାନେ ପୂରଣ କରିବୁ" ଭୀମଙ୍କର କଣ୍ଠସ୍ୱରରେ ଦୃଢ଼ତା ।

ଅର୍ଜୁନ, ନକୁଳ ଓ ସହଦେବ ଭୀମଙ୍କୁ ସମର୍ଥନ ଜଣାଇଥିଲେ । ଯୁଧିଷ୍ଠିର ଏକ ବିଷମ ପରିସ୍ଥିତିର ସମ୍ମୁଖୀନ ହେଲେ । ଭାଇମାନଙ୍କ ପ୍ରବଳ ଇଚ୍ଛା ରାଜସୂୟ ଯଜ୍ଞାନୁଷ୍ଠାନ । ଏଣେ ମାତାଙ୍କର ଅବଶୋଷ, ସେମାନଙ୍କ ପିତାଙ୍କର ପ୍ରବଳ ଇଚ୍ଛାସତ୍ତ୍ୱେ ସେ ଏହି ଯଜ୍ଞ କରିପାରି ନ ଥିଲେ । ଏପରି କ୍ଷେତ୍ରରେ ସେ କି ମତାମତ ଦେବେ ସ୍ଥିର କରିପାରିଲେ ନାହିଁ । ଯଦି ଯଜ୍ଞାନୁଷ୍ଠାନ ସପକ୍ଷରେ ମତ ଦେଉଛନ୍ତି ତେବେ ହେବ ଯୁଦ୍ଧ, ରକ୍ତପାତ, ଯାହାକୁ ସେ ଅନ୍ତରର ସହିତ ଘୃଣା କରନ୍ତି । ଯଦି ପ୍ରସ୍ତାବ ବିରୋଧରେ ଯାଉଛନ୍ତି ପିତାଙ୍କର ଅସମ୍ପୂର୍ଣ୍ଣ ଇଚ୍ଛା ପୂର୍ଣ୍ଣ ହୋଇପାରିବ ନାହିଁ । ପିତାଙ୍କର ଇଚ୍ଛା କାର୍ଯ୍ୟକାରୀ କରିବା ପୁତ୍ରର ପରମ କର୍ତ୍ତବ୍ୟ । ତାହା ନ କଲେ ସେ ହେବେ ପିତୃଦ୍ରୋହୀ । ଯେଉଁ ମାତା ତାଙ୍କୁ ପ୍ରାଣରୁ ଅଧିକ କରି ପାଳି ଆସିଛନ୍ତି ଯାହାଙ୍କର ସନ୍ତୋଷବିଧାନ ତାଙ୍କର ପ୍ରଥମ କର୍ତ୍ତବ୍ୟ ସେଥିରେ ହେଳାକଲେ ସେ ମାତୃ ଅସନ୍ତୋଷର ମଧ୍ୟ କାରଣ ହେବେ ।

ଏହିପରି ଦ୍ୱନ୍ଦ୍ୱରେ ପଡ଼ିଥିବାବେଳେ ଦିବାବସାନ ହେଲା । ଭୋଜଶୋଷ ନାହିଁ । ସବୁବେଳେ ଗୋଟିଏ ଚିନ୍ତା ସେ ଏପରି ପରିସ୍ଥିତିରେ କଣ କରିବେ । କ୍ରମେ

ରାତି ଗମ୍ଭୀର ହେଲା, ସେ ଶୋଇବାକୁ ଗଲେ । ଭାବିଥିଲେ ନିଦ୍ରାକୋଳରେ ସେ ସାମୟିକ ଶାନ୍ତି ପାଇବେ । ତାହା ବି ହୋଇପାରିଲା ନାହିଁ । ତାପରେ ଶଯ୍ୟାତ୍ୟାଗ କରି ସେ ଉପର ବାହାରକୁ ଆସିଲେ ଏବଂ ଉପର ଦେବର୍ଷି ନାରଦ ତାଙ୍କୁ ପିତାଦେଶ ଜ୍ଞାପନ କଲେ ତାହା ଏଥି ପୂର୍ବରୁ ବର୍ଣ୍ଣିତ ହୋଇଛି ।

'ରାଜସୂୟ ଯଜ୍ଞ ଅନୁଷ୍ଠାନ କର' ସ୍ୱର୍ଗତ ପିତା ପଣ୍ଡୁଙ୍କର ଏହି ଆଦେଶ ଯୁଧିଷ୍ଠିରଙ୍କୁ ଜଣାଇ ଦେବାପରେ ମୁନି ଅନ୍ତର୍ହିତ ହୋଇଗଲେ । ଯୁଧିଷ୍ଠିରଙ୍କର ମୁଣ୍ଡ ଘୂରିଗଲା । ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା । ସେହି ଅନ୍ଧକାରରେ ଅଣ୍ଡାଳି ଅଣ୍ଡାଳି ସେ ପ୍ରାସାଦକୁ ଫେରିଆସିଲେ । ରାତି ଶେଷ ହୋଇ ନ ଥାଏ । ଶୟନ କରିବା ପାଇଁ ସେ ବିଛଣାକୁ ଗଲେ ନିଦ୍ରା ହେବା ଦୂରେ ଥାଉ ଆଖିପତା ପଡ଼ିଲା ନାହିଁ—ଖାଲି ଶୁଣାଯାଉଥାଏ ରାଜସୂୟ ଯଜ୍ଞ ଅନୁଷ୍ଠାନ କର ।

ଯୁଧିଷ୍ଠିର ବିଛଣାରେ ଏହିପରି ଛଟପଟ ହେଉଥିବାବେଳେ ରାତି ପ୍ରଭାତ ହେଲା । ସେ ଭାଇମାନଙ୍କ ସହିତ ସରୁଦନ ପରି ନଈକୁ ଗଲେ । ସ୍ନାନପରେ ଦେବ ଆରାଧନା କଲେ । ମାତ୍ର ତାଙ୍କର ମନରେ ସୁଖ ନ ଥାଏ । ରାଜସୂୟ ଯଜ୍ଞ ଅନୁଷ୍ଠାନ କର ଏହା ଯେପରି ତାଙ୍କ କର୍ଣ୍ଣରେ ପ୍ରତିଧ୍ୱନିତ ହେଉଥାଏ ।

ଭାଇଙ୍କର ଏପରି ଅବସ୍ଥା ଲକ୍ଷ୍ୟକରି ଭୀମ ପଚାରିଲେ ଭାଇ ଦେହ ଭଲ ନାହିଁ କି ? ନା ମୋର କୌଣସି ଶାରୀରିକ ଅସୁସ୍ଥତା ନାହିଁ, ହେଲେ ଗତ ରାତିରେ ମୋର ନିଦ୍ରା ହୋଇନାହିଁ ।

ତତ୍ପରେ ଯିଏ ଯାହାର କାମରେ ମନଦେଲେ, ମାତ୍ର ଯୁଧିଷ୍ଠିର ଭାବୁଥାନ୍ତି ପିତାଙ୍କର ଆଦେଶ ରାଜସୂୟ ଯଜ୍ଞ ଅନୁଷ୍ଠାନ—

ଖାଇବା ସମୟ ହେଲା । ସମସ୍ତେ ଖାଇବାରେ ବ୍ୟସ୍ତ । ଯୁଧିଷ୍ଠିରଙ୍କର କିନ୍ତୁ ଭୋଜନ ପ୍ରତି ଆଗ୍ରହ ନ ଥାଏ । ସେ କେବଳ ପିତାଦେଶ କଥା ଭାବୁଥାନ୍ତି । ତାଙ୍କର ଏପରି ଉଦାସୀନତା ଲକ୍ଷ୍ୟ କରି ମାତା ବଡ଼ ବ୍ୟଥିତ ହୋଇପଡ଼ିଲେ । ଉଦ୍‌ବିଗ୍ନତାର ସହିତ ପଚାରିଲେ, ପୁତ୍ର ତୋର କଣ ହୋଇଛି । ମୁହଁ ଶୁଖିଲା ଦିଶୁଛି, ଖାଇବାରେ ଆଗ୍ରହ ନାହିଁ । କଥା କଣ ? ଯୁଧିଷ୍ଠିର ଆଉ ସମ୍ଭାଳି ପାରିଲେ ନାହିଁ । ଗତ ରାତିର ଘଟନା ଆଦ୍ୟପ୍ରାନ୍ତ ବର୍ଣ୍ଣନା କରିଗଲେ ।

ସମସ୍ତେ ଯେତେବେଳେ ଶୁଣିଲେ ସ୍ୱର୍ଗତଃ ପିତା ରାଜସୂୟ ଯଜ୍ଞାନୁଷ୍ଠାନ ପାଇଁ ନିର୍ଦ୍ଦେଶ ଦେଇଛନ୍ତି, ଆନନ୍ଦରେ ସମସ୍ତେ ଅଧୀର ହୋଇପଡ଼ିଲେ । ମାତ୍ର ଯୁଧିଷ୍ଠିର ସେହିପରି ବିଷଣ୍ଣ । ରାଜସୂୟ ଯଜ୍ଞ ଅର୍ଥ ଯୁଦ୍ଧ, ରକ୍ତପାତ, କେତେ ସୈନ୍ୟର ସଂହାର ଚୂନା ହୋଇଯିବ । କେତେ ରମଣୀ ଅକାଳରେ ସେମାନଙ୍କର ସ୍ୱାମୀମାନଙ୍କୁ ହରାଇବେ । କେତେ ମାତା ହେବେ ପୁତ୍ରହରା । ଏହି ଚିନ୍ତା ତାଙ୍କ ଦୁଃଖର ପ୍ରଧାନ କାରଣ ଥିଲା ।

ସେମାନେ ସମସ୍ତ ଦୁଶ୍ଚିନ୍ତା ପରିତ୍ୟାଗ କରି ରାଜସୂୟ ଯଜ୍ଞାନୁଷ୍ଠାନରେ ମନ ଦେବାକୁ ଯୁଧିଷ୍ଠିରଙ୍କୁ ଅନୁରୋଧ କଲେ । ମାତା କୁନ୍ତୀ ପିତାଦେଶ ଉପରି ପାଳନୀୟ ଏ ବିଷୟ ତାଙ୍କୁ ବହୁତ ବୁଝାଇଲେ ମାତ୍ର କୌଣସି ଥରେ ତାଙ୍କର ମନର ପରିବର୍ତ୍ତନ ହେଲା ନାହିଁ । ଶେଷରେ ଦ୍ୱାରକାରୁ ଶ୍ରୀକୃଷ୍ଣଙ୍କୁ ଏବଂ କୁରୁକ୍ଷେତ୍ରରୁ ମହାମୁନି ବେଦବ୍ୟାସଙ୍କୁ ଡକାଇବାର ସ୍ଥିର ହେଲା । ସେ ଦୁହେଁ ଯେଉଁ ପରାମର୍ଶ ଦେବେ ସେହି ଅନୁସାରେ କାର୍ଯ୍ୟ ହେବ ।

କିଛି ଦିନ ପରେ ମହାମୁନି ବେଦବ୍ୟାସ ତାଙ୍କର ଶିଷ୍ୟମାନଙ୍କ ସହିତ ଇନ୍ଦ୍ରପ୍ରସ୍ଥରେ ପହଞ୍ଚିଲେ । ତାର ଆଉ କେତେ ଦିନ ପରେ ଶ୍ରୀକୃଷ୍ଣ ମଧ୍ୟ ପହଞ୍ଚିଲେ । ଦୁଇ କୃଷ୍ଣଙ୍କୁ କୋଳରେ ଘେନି ଇନ୍ଦ୍ରପ୍ରସ୍ଥ ନଗରୀ ହସି ଉଠିଲା ।

ଦିନେ ସନ୍ଧ୍ୟାବେଳେ ରାଜସୂୟ ଯଜ୍ଞ କାରଣୀୟ କି ନା ଏ ବିଷୟରେ ଆଲୋଚନା ପାଇଁ ଗୋଟିଏ ଗୁପ୍ତ ସଭା ବସିଲା । ପାଣ୍ଡବ ପାଞ୍ଚଭାଇ, ଦ୍ରୌପଦୀ, ମାତା କୁନ୍ତୀ ଅର୍ଜ୍ଜୁନଙ୍କ ସ୍ତ୍ରୀ ସୁଭଦ୍ରା, ଶ୍ରୀକୃଷ୍ଣ ଓ ବେଦବ୍ୟାସ ଏଥିରେ ଉପସ୍ଥିତ ଥାନ୍ତି । ପ୍ରଥମେ ଯୁଧିଷ୍ଠିର ରାଜସୂୟ ଯଜ୍ଞର ଅନୁଷ୍ଠାନ ପାଇଁ ଉପରି ସ୍ୱର୍ଗତ ପିତା ପାଣ୍ଡୁଙ୍କ ଠାରୁ ନିର୍ଦ୍ଦେଶ ପାଇଛନ୍ତି ତାହା ଆମୂଳଚୂଳ ବର୍ଣ୍ଣନ କଲେ ଏବଂ ଏ ବିଷୟରେ ତାଙ୍କର ମତାମତ ମଧ୍ୟ ପ୍ରକାଶ କଲେ । ଶେଷରେ ସେ କହିଲେ ରାଜଚକ୍ରବର୍ତ୍ତୀ ଉପାଧି ଲାଭ ପାଇଁ ଏହି ଯଜ୍ଞର ଅନୁଷ୍ଠାନ ଏକାନ୍ତ ଆବଶ୍ୟକ । ତେବେ ସେ ଉପାଧି ପ୍ରତି ସେ ଆଗ୍ରହୀ ନୁହନ୍ତି । ନିରୀହ ଜନତାର ରକ୍ତରେ ନିଜର ବଡ଼ପଣିଆ ପ୍ରକାଶ କରିବାକୁ ସେ ଅନିଚ୍ଛୁକ ।

ଯୁଧିଷ୍ଠିରଙ୍କ ହୃଦୟର ଭାବ ଜାଣିବା ପରେ ମହାମୁନି ବେଦବ୍ୟାସ ଟିକିଏ ହସିଦେଇ ତାଙ୍କର ସ୍ୱଭାବସୁଲଭ କୋମଳ ଅଥଚ ମନମତାଣିଆ ସ୍ୱରରେ କହିଲେ— କେବଳ ଉପାଧିଲାଭ ପାଇଁ ରାଜସୂୟ ଯଜ୍ଞାନୁଷ୍ଠାନ ଅଭିପ୍ରେତ ନୁହେଁ । ଏହାଦ୍ୱାରା ଦୁଇଟି ମହତ୍ କାର୍ଯ୍ୟ ସାଧିତ ହୋଇଥାଏ । ପ୍ରଥମ ହେଲା, ରାଜସୂୟ ହେଉ ବା ବାଜପେୟ ବା ଅଶ୍ୱମେଧ ଯଜ୍ଞ ହେଉ ଏ ତିନୋଟି ମଧ୍ୟରୁ ଯେଉଁଟି ଅନୁଷ୍ଠିତ ହେଉନା କାହିଁକି ଏଥିକୁ ଶତଶତ ଋଷିଙ୍କ ନିମନ୍ତ୍ରିତ ହୋଇଥାନ୍ତି । ସେଠାରେ ବୈଦିକ ମନ୍ତ୍ର ପ୍ରକୃତ ସ୍ୱର ଓ ତାଳରେ ଉଚ୍ଚାରଣ କରାଯାଏ । ପୁଣି ଯଦି କେହି ସତ୍ତ୍ୱ ଯଥାରୀତି ହେଉ ନ ଥାନ୍ତି ସେ ନିଜ ନିଜର ଭ୍ରମ ଏହିପରି ଧର୍ମାନୁଷ୍ଠାନମାନଙ୍କରେ ସଂଶୋଧନ କରି ନିଅନ୍ତି । ତଦ୍ଦ୍ୱାରା ବେଦର ଭିତ୍ତି ଦୃଢ଼ ହୁଏ । ତାପରେ ତାଙ୍କର ପୂର୍ବ ପୁରୁଷ ଶାନ୍ତନୁ ଉପରି ବାଜପେୟ ଯଜ୍ଞ ଅନୁଷ୍ଠାନ କରିଥିଲେ ଏବଂ ସେତେବେଳେ ତାଙ୍କର ବୟସ ଷୋଡ଼ଏ ବର୍ଷ ହୋଇଥିଲେ ମଧ୍ୟ ସେ ଏଥିରେ ଉପରି ସକ୍ରୀୟ ଅଂଶ ଗ୍ରହଣ କରିଥିଲେ ବର୍ଣ୍ଣନ କରିଥିଲେ । ଏହାପରେ କୃଷ୍ଣଙ୍କର ଏ ବିଷୟରେ ମତାମତ କଣ ଜାଣିବାକୁ ଚାହିଁଥିଲେ ।

ପୂଜ୍ୟ ମହାରାଜ, ଅତି ଧୀର କୋମଳ ସ୍ୱରରେ ଆରମ୍ଭ କଲେ କୃଷ୍ଣ । ରାଜଚକ୍ରବର୍ତ୍ତୀ ହେବାର ସମସ୍ତ ଯୋଗ୍ୟତା ଯୁଧିଷ୍ଠିରଙ୍କଠାରେ ଅଛି । କେବଳ ଉପାଧିଟା ଲାଭ କରିବା ବାକି ରହିଯାଇଛି । ସେଥିପାଇଁ ଯେ ଏହି ଯଜ୍ଞ ଅନୁଷ୍ଠାନ କରିବାକୁ ହେବ ସେପରି ବର୍ତ୍ତିବା ଠିକ୍ ନୁହେଁ । ପୁଣି ମନେ ରଖିବାକୁ ହେବ ଦେବତାମାନଙ୍କର ସନ୍ତୋଷବିଧାନ ବା ପୂର୍ବ ପୁରୁଷଙ୍କ ତୃପ୍ତି ସକାଶେ ଏହା ଅଭିପ୍ରେତ ନୁହେଁ । ଏହାଦ୍ୱାରା ଋଷିମାନେ ତ୍ୟାଗପୂତ କଠୋର ଜୀବନଯାପନ କରିବା ପାଇଁ ଉତ୍ସାହ ପାଇଥାନ୍ତି ଏବଂ କ୍ଷାତ୍ରଧର୍ମର ପରମ୍ପରା ଅଧିକ ଶକ୍ତିଶାଳୀ ହୋଇଥାଏ । ଏ ଯଜ୍ଞୋତ୍ସବକୁ କେତେ ଯେ ବ୍ରାହ୍ମଣ ଓ ଋଷିମାନେ ଆସିଥାନ୍ତି ତା ନୁହେଁ ସାଧାରଣ ସ୍ତ୍ରୀ ପୁରୁଷ ଶତ ଶତ ସଂଖ୍ୟାରେ ଆସିଥାନ୍ତି । ଏହା ଦେଖିବା ପରେ ସେମାନଙ୍କର ଧର୍ମଧାରଣା ଦୃଢ଼ ହୁଏ ଏବଂ କେବଳ ଧର୍ମାଚରଣ ଯେ ସମସ୍ତ ସୁଖଶାନ୍ତିର କାରଣ ଏହି ଭାବ ହୃଦୟରେ ଧରି ସେମାନେ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଏହାଦ୍ୱାରା ଆର୍ଯ୍ୟ ସମାଜ ନୂତନ ପ୍ରାଣ ପେରି ଜୀବନ୍ତ ହୋଇଉଠେ । ତାପରେ ଯୁଧିଷ୍ଠିରଙ୍କୁ ସମ୍ବୋଧନ କରି ସେ କହିଲେ—ରାଜ, ଏହି ଅନୁଷ୍ଠାନ ସହିତ ଯୁଦ୍ଧର ସମ୍ପର୍କ ଓ ତାର ଉତ୍ପାଦିତ ପରିଣତି ବିଷୟରେ ଭ୍ରମର ଧାରଣା ଯଥାର୍ଥ । ଏହା ସଙ୍ଗେ ସଙ୍ଗେ ଆମେମାନେ ମଧ୍ୟ ଦେଖିବା ଯଦି ଏପରି ଧର୍ମାନୁଷ୍ଠାନ ନହୁଏ ମାନବ ସମାଜର ଅବସ୍ଥା କିପରି ଶୋଚନୀୟ ହୋଇ ପଡ଼ିବ । କେବଳ ମାନବକଲ୍ୟାଣ ପାଇଁ ଏହି ରାଜସୂୟ ଯଜ୍ଞର ଆବଶ୍ୟକତା ରହିଛି । ସମୟର ନିର୍ଦ୍ଦିଷ୍ଟ ବ୍ୟବଧାନ ମଧ୍ୟରେ ଯଦି ଏହା ଅନୁଷ୍ଠିତ ନ ହୁଏ, ଧର୍ମର ଜନମାନସ ଉପରେ ଯେଉଁ କର୍ତ୍ତୃତ୍ୱ ଅଛି ତାହା ଦୁର୍ବଳ ହୋଇପଡ଼ିବ । ରାଜାମାନେ ବିଶୃଙ୍ଖଳ ହୋଇପଡ଼ିବେ, ସତ୍ପଥରେ ଜୀବନଯାପନ ସ୍ୱପ୍ନ ହୋଇଯିବ । ପରିବାର ଛିନ୍ନଭିନ୍ନ ହୋଇଯିବ । ବ୍ରାହ୍ମଣମାନେ ତ୍ୟାଗପୂତ କଠୋର ଜୀବନଯାପନ ପରିତ୍ୟାଗ କରିବେ । ବେଦର ପ୍ରଚ୍ଛନ୍ନ ଅଦ୍ଭୁତ ଶକ୍ତି ନଷ୍ଟ ହୋଇଯିବ ।

ରାଜସୂୟ ଯଜ୍ଞ ସମ୍ବନ୍ଧରେ କୃଷ୍ଣଙ୍କର ବ୍ୟାଖ୍ୟାରେ ସମସ୍ତେ ମୁଗ୍ଧ ହୋଇଗଲେ । ଯୁଧିଷ୍ଠିର ମଧ୍ୟ ନୀରବ ରହିଲେ । ଶେଷରେ କୃଷ୍ଣ ଓ ବେଦବ୍ୟାସଙ୍କ ପରାମର୍ଶକ୍ରମେ ରାଜସୂୟ ଯଜ୍ଞାନୁଷ୍ଠାନ ସ୍ଥିର ହେଲା ।

ପରଦିନଠାରୁ ଏହି ଯଜ୍ଞର ପ୍ରସ୍ତୁତିପର୍ବ ଆରମ୍ଭ ହୋଇଗଲା । ଭୀମ, ଅର୍ଜ୍ଜୁନ, ନକୁଳ ଓ ସହଦେବ ବିଭିନ୍ନ ରାଜ୍ୟର ରାଜାମାନଙ୍କୁ ନିମନ୍ତ୍ରଣ କରିବାପାଇଁ ବାହାରିଗଲେ ।

ଅଳ୍ପ କେତେକ ମାସପରେ ନିମନ୍ତ୍ରଣ କରିବା କାର୍ଯ୍ୟ ଶେଷ ହେଲା । ରାଜସୂୟ ଯଜ୍ଞକୁ ଯେ କେବଳ ରାଜାମାନେ ନିମନ୍ତ୍ରିତ ହୋଇଥିଲେ ତା ନୁହେଁ ଶତଶତ ବ୍ରାହ୍ମଣ, ମୁଖ୍ୟ ବ୍ୟବସାୟୀ, କୃଷକ ଏପରିକି ଶୂଦ୍ରମାନେ ନିମନ୍ତ୍ରିତ ହୋଇଥିଲେ । ନିମନ୍ତ୍ରଣ କଲାବେଳେ ଅଧିକାଂଶ ରାଜା ଯୁଧିଷ୍ଠିରଙ୍କର ପ୍ରଭୁତ୍ୱ ସ୍ୱୀକାର କରି ଏଥିରେ ଯୋଗଦେବା ପାଇଁ ଆନନ୍ଦରେ ରାଜି ହୋଇଗଲେ, ଆଉ ଯେଉଁମାନେ ନିଜର ଗର୍ବ ଓ ଅହଙ୍କାର

ଯୋଗୁଁ ଏହି ଆମନ୍ତ୍ରଣ ରକ୍ଷା କରିବା ନିମିତ୍ତ ଅସ୍ୱୀକୃତ ହେଲେ ବଳପ୍ରୟୋଗ ପୂର୍ବକ ସେମାନଙ୍କୁ ଯୁଧିଷ୍ଠିରଙ୍କ କର୍ତ୍ତୃତ୍ୱ ମାନିନେବାକୁ ବାଧ୍ୟ କରାଯାଇଥିଲା ।

ଯଜ୍ଞାନୁଷ୍ଠାନରେ ଆଉ କୌଣସି ପ୍ରତ୍ୟବାୟ ରହିଲା ନାହିଁ । ଯଥାସମୟରେ ରାଜସୂୟ ଯଜ୍ଞ ଅନୁଷ୍ଠିତ ହେଲା । ଶତ ଶତ ରାଜା ଏହି ଉତ୍ସବରେ ଯୋଗ ଦେଇଥିଲେ । ହସ୍ତିନାପୁରରୁ ଧୃତରାଷ୍ଟ୍ର, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅର୍ଜୁନ, ବିଦୁର, ଶକୁନି, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ପ୍ରଭୃତି ବଶିଷ୍ଟ ବ୍ୟକ୍ତିମାନେ ଏଥିରେ ସହଯୋଗ କଲେ । ଭାଇମାନଙ୍କୁ ନଜର କରିବା ପାଇଁ ଏହି ଉତ୍ସବ ଯେପରି ସୁଚାରୁରୂପେ ପରିଚାଳିତ ହୁଏ ଦେଖିବାପାଇଁ ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତିଙ୍କୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ରଖାଯାଇଥିଲା ।

ଯାହାହେଉ ସମସ୍ତଙ୍କ ଉଦ୍ୟମରେ ଯଜ୍ଞ କାର୍ଯ୍ୟ ଯଥାବିଧି ସମାହିତ ହୋଇଗଲା । ଏହି ଯଜ୍ଞର ନିୟମାନୁସାରେ ସେଠାରେ ଉପସ୍ଥିତ ପ୍ରଧାନ ବ୍ୟକ୍ତିଙ୍କୁ ଅଗ୍ରପୂଜା ଦିଆଯାଏ । ଏଥିପାଇଁ ଭୀଷ୍ମ କୃଷ୍ଣଙ୍କ ନାମ ପ୍ରସ୍ତାବ କଲେ । ତାଙ୍କର ଏହି ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେଲା, ମାତ୍ର ଚେଦୀରାଜ ଶିଶୁପାଳ ଏହାର ପ୍ରତିରୋଧ କଲେ । କୃଷ୍ଣ, ଭୀଷ୍ମଙ୍କ ପ୍ରତି ନାନା ଅପମାନସୂଚକ ବାକ୍ୟ ପ୍ରୟୋଗ କଲେ । ସଭାରେ ବିଶୃଙ୍ଖଳା ସୃଷ୍ଟିକରିବା ଉଦ୍ଦେଶ୍ୟରେ ତାଙ୍କୁ ସମର୍ଥନ କରୁଥିବା ରାଜନ୍ୟମାନଙ୍କୁ ଉସୁକାଇଲେ । କୃଷ୍ଣ ଦେଖିଲେ ଅବସ୍ଥା କ୍ରମେ ଗୁରୁତର ହେଉଛି । ଅଗ୍ରପୂଜା ଲଭି କରିବାପରେ ସେ ହେଉଛନ୍ତି ସଭାର ସଭାପତି । ଶୃଙ୍ଖଳା ରକ୍ଷାକରିବା ତାଙ୍କର କର୍ତ୍ତବ୍ୟ । ଯେତେବେଳେ ସେ ଶିଶୁପାଳର ଏପରି ଶିଷ୍ଟାଚାର ବହିର୍ଭୂତ କାର୍ଯ୍ୟ ଦେଖିଲେ ସେ ତାଙ୍କର ପ୍ରଧାନ ଅସ୍ତ୍ର ସୁଦର୍ଶନ ଚକ୍ର ପ୍ରୟୋଗ କଲେ । ଶିଶୁପାଳଙ୍କର ମୁଣ୍ଡ ଗଣ୍ଡିରୁ ଅଲଗା ହୋଇଗଲା ।

ବର୍ତ୍ତମାନ ପ୍ରସ୍ଥାନ ପର୍ବ ଆରମ୍ଭ ହେଲା । ନିଜ ନିଜ ରାଜ୍ୟକୁ ଫେରିବା ପୂର୍ବରୁ ରାଜାମାନେ ଯୁଧିଷ୍ଠିରଙ୍କୁ ରାଜଚକ୍ରବର୍ତ୍ତୀର ସମ୍ମାନ ପ୍ରଦର୍ଶନ କଲେ । ତାଙ୍କ ନିକଟରେ ପ୍ରଣିପାତ ହେଲେ । ଏହିପରି କିଛି ସମୟ ଅତିବାହିତ ହେଲା । ତତ୍ପରେ ସିଏ ଯାହାର ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ ।

କେବଳ ରହିଗଲେ ପିତାମହ ଭୀଷ୍ମ ଏବଂ ହସ୍ତିନାପୁରରୁ ଆମନ୍ତ୍ରିତ ହୋଇଥିବା ବଶିଷ୍ଟ ବ୍ୟକ୍ତିମାନେ । ଉଦ୍ଦେଶ୍ୟ ଯଜ୍ଞ ସକାଶେ ଯେଉଁ ଅଦ୍ଭୁତ ସଭାଗୃହ ନିର୍ମିତ ହୋଇଥିଲା ତାହା ଦେଖିବା ପାଇଁ ।

ଦୁର୍ଯ୍ୟୋଧନ ଭୀମ ଓ ଦ୍ରୌପଦୀଙ୍କ ଗହଣରେ ସଭାଗୃହ ଦେଖୁଥାନ୍ତି । ସଭାଗୃହର ନିର୍ମାଣ କୌଶଳ ମନରେ ଅପୂର୍ବ ଆନନ୍ଦ ସୃଷ୍ଟି କରୁଥାଏ । ଗୃହମଧ୍ୟରେ ବୁଲିବୁଲି ଥରେ ସେ ଆଣ୍ଠୁଏ ପାଣିରେ ପଶିଗଲେ-ଏହା କୌଣସି ଜଳାଶୟର ଉପର ଭାଗ କି ଚଟାଣର ଉପର ଭାଗ ସେ ଜାଣିପାରଲେ ନାହିଁ । ଅଉଥରେ ମଧ୍ୟ ସେ ଯାହାକୁ ଦୁଆର ବୋଲି

ମନେ କରୁଥିଲେ ତାହା ଦୁଆର ନୁହେଁ, ଗୃହର କାନ୍ଥ । ତାଙ୍କର ମୁଣ୍ଡ ସେଥିରେ ଠୋକିହ ବାଡ଼େଇ ହୋଇଗଲା । ଦୁର୍ଯ୍ୟୋଧନଙ୍କର ଏପରି ଅବସ୍ଥା ଦେଖି ଭୀମ, ଦ୍ରୌପଦୀ ଆଚ୍ଛା ହସଟାଏ ହସିଲେ । ସେମାନଙ୍କର ଏହି ତାଚ୍ଛଲ୍ୟପୂର୍ଣ୍ଣ ହସରେ ଦୁର୍ଯ୍ୟୋଧନ ବିଶେଷଭାବରେ ଲଜ୍ଜିତ ଓ ଅପମାନିତ ବୋଧ କରିଥିଲେ । କ୍ରମେ ଅତିଥିମାନେ ବିଦାୟ ନେଲେ ।

ଯୁଧିଷ୍ଠିର ଚକ୍ରବର୍ତ୍ତୀ ଉପାଧି ଲାଭକଲେ ହେଲେ, ତାଙ୍କ ମନରେ ସୁଖ ନ ଥାଏ । ଯଜ୍ଞ ସମୟରେ ଶିଶୁପାଳଙ୍କର ଆଚରଣରେ ସେ ବ୍ୟଥିତ ହୋଇପଡ଼ିଥିଲେ ପୁଣି ଅନ୍ୟ କେତେକ ରାଜା ଯେପରି ତାଙ୍କୁ ସମର୍ଥନ କଲେ ସେଥିରୁ ସେ ସ୍ପଷ୍ଟ ବୁଝିପାରିଲେ ଯେତେ ଧର୍ମାନୁଷ୍ଠାନ କଲେ ମଧ୍ୟ ଦୁଷ୍ଟଲୋକମାନଙ୍କୁ ସତ୍‌ପଥରେ ଆଣିବା ସମ୍ଭବ ନୁହେଁ । ପ୍ରତ୍ୟେକ ଉତ୍ସବର ଶେଷରେ ଶାନ୍ତି, ଶାନ୍ତି, ଶାନ୍ତି ବୋଲି ଉଚ୍ଚାରଣ କରାଯାଇଥାଏ । ଉଦ୍ଦେଶ୍ୟ ସୃଷ୍ଟିରେ ଶାନ୍ତି ବିରାଜିତ ହେବ । ଅଶାନ୍ତି, ହିଂସା, ଦ୍ୱେଷ, କ୍ରୋଧ ଦୂର ହୋଇଯିବ । ସମସ୍ତେ ସ୍ନେହରେ, ପ୍ରେମରେ ବସବାସ କରିବେ, ଧରା ସ୍ୱର୍ଗରେ ପରିଣତ ହେବ । ଶାନ୍ତି, ସମଭାବ ଓ ଐକ୍ୟ ପ୍ରତିଷ୍ଠାଦିଗରେ ସାହାଯ୍ୟ କରିବା ପାଇଁ ଏହି ଯେଉଁ ରାଜସୂୟ ଯଜ୍ଞ ଅନୁଷ୍ଠିତ ହେଲା ତାର ପରିଣତି କଣ ହେଲା—ଜରାସନ୍ଧ ଓ ଶିଶୁପାଳଙ୍କର ହତ୍ୟା, ସେମାନଙ୍କର ସାହାଯ୍ୟକାରୀ ଗୋଷ୍ଠୀ ଓ ଅନ୍ୟମାନଙ୍କ ମଧ୍ୟରେ ତୀବ୍ର ହିଂସାଭାବର ଉଦ୍ରେକ । ଏସବୁ ଭାବିଲାବେଳକୁ ତାଙ୍କର ମୁଣ୍ଡ ଘୂରିଗଲା, ସେ ପଡ଼ିଗଲେ ।

ଅର୍ଦ୍ଧଚେତନ ଅବସ୍ଥାରେ ସେ ଦେଖିଲେ ଯେତେ ସେପରି ଯୁଦ୍ଧକ୍ଷେତ୍ରରେ ସେ ଆହତ ଅବସ୍ଥାରେ ପଡ଼ିଛନ୍ତି । ଅପେକ୍ଷା କରି ରହିଛନ୍ତି ଶତ୍ରୁର ଶାଣିତ ତରବାରୀ କେତେବେଳେ ତାହାଙ୍କର ହୃଦୟ ଭେଦ କରିବ-ଅଥଚ ଦୂରରୁ ବହୁ ଦୂରରୁ ଭାସି ଆସୁଛି ସେହି ଉଚ୍ଚାରଣ ଶାନ୍ତି, ଶାନ୍ତି, ଶାନ୍ତି । ସର୍ବଶେଷରେ ଯେତେବେଳେ ମହାମୁନି ବେଦବ୍ୟାସ ଯୁଧିଷ୍ଠିରଙ୍କ ଠାରୁ ବିଦାୟ ନେବାକୁ ଆସିଲେ, ଯୁଧିଷ୍ଠିର ଅତି ଭକ୍ତିର ସହିତ ତାଙ୍କର ପାଦ ଧୋଇଦେଲେ, ଚକ୍ଷୁଦୁଇଟି ଲୋତକପୂର୍ଣ୍ଣ ମୁଖରେ ବିଷଣ୍ଣତାର ଭାବ ।

ସେ ହାତ ଯୋଡ଼ି କହିଲେ, "ମହାତ୍ମନ ଆପଣ ସର୍ବଜ୍ଞ, ସର୍ବଦ୍ରଷ୍ଟା । ଅତୀତ, ବର୍ତ୍ତମାନ, ଭବିଷ୍ୟତ ଆପଣଙ୍କ ଚକ୍ଷୁ ସମ୍ମୁଖରେ । କହିପାରିବେ ଏହାପରେ କଣ ଘଟିବ ?" ଟିକିଏ ନୀରବ ରହି ମୁନି ଅତି ଧୀର କୋମଳସ୍ୱରରେ ଆରମ୍ଭ କଲେ "ଶିଶୁପାଳବଧ ସୁଦୂରପ୍ରସାରୀ । ଏହା ଏକ କ୍ଷତ୍ରିୟଧ୍ୱଂସକାରୀ ଯୁଦ୍ଧର ଅସ୍ତ୍ରମାରମ୍ଭ ମାତ୍ର । କଂସ, ଜରାସନ୍ଧ, ଶିଶୁପାଳଙ୍କର ପ୍ରେତାତ୍ମା ଏବେ ମୁକ୍ତ ସକ୍ରୀୟ । ସେମାନଙ୍କର ରକ୍ତ ପିପାସା ମେଣ୍ଟିନାହିଁ ।

"ମୁଁ କଣ ମୋର ଜୀବନର ବିନିମୟରେ ଏହି ପ୍ରଳୟଙ୍କରୀ ହତ୍ୟାକାଣ୍ଡର ନିରାକରଣ କରିପାରିବି ନାହିଁ ? ଯୁଧିଷ୍ଠିର ଉତ୍କଣ୍ଠାର ସହିତ ଜାଣିବାକୁ ଚାହିଁଲେ ।

'ନାଁ, ବତ୍ସ ! ତୁମେତ ଏହା ବନ୍ଦ କରିପାରିବ ନାହିଁ । ବରଂ ଅଦୂର ଭବିଷ୍ୟତରେ ଯେଉଁ ଏକ ନରମାରଣ ଯଜ୍ଞର ଅନୁଷ୍ଠାନ ହେବ ତୁମେ ହେବ ଏହାର କେନ୍ଦ୍ରବିନ୍ଦୁ ।''

'ହେ, ଭଗବାନ' ଯୁଧିଷ୍ଠିର ଚିତ୍କାର କରି ଉଠିଲେ । ଅଶ୍ରୁଳ ନୟନରେ ପ୍ରଶ୍ନ କଲେ କୌଣସିମତେ ଏହା ଏଡ଼ାଇ ହେବ ନାହିଁ ?''

'ନା, ଏ ଦୁର୍ଗତିରୁ ରକ୍ଷାମିଳିବା ଅସମ୍ଭବ ।''

ଏତିକ କହି ମହାମୁନି ବିଦାୟ ନେଲେ—ଯୁଧିଷ୍ଠିର ସାଷ୍ଟାଙ୍ଗ ପ୍ରଣିପାତ ହୋଇ ତାଙ୍କୁ ବିଦାୟ ଦେଲେ ।

ଯୁଧିଷ୍ଠିରଙ୍କର ହୃଦୟ ବାତ୍ୟା ବିକ୍ଷୁବ୍ଧ ସାଗର ସଦୃଶ ସ୍ୱାପଣଭାବେ ଆନ୍ଦୋଳିତ ।

## ବନବାସ

ଭାଇ ଭାଇମାନଙ୍କ ମଧ୍ୟରେ କିପରି ଶାନ୍ତି ପ୍ରତିଷ୍ଠିତ ହେବ—ଏକ ସର୍ବଧ୍ୱଂସୀ ସମର କିପରି ଏଡ଼ାଇ ଦେବାକୁ ପଡ଼ିବ ଏହି ଚିନ୍ତାରେ ଯୁଧିଷ୍ଠିର ଇନ୍ଦ୍ରପ୍ରସ୍ଥରେ ଉନ୍ନିଦ୍ର ରଜନୀ ଯାପନ କରୁଥିଲାବେଳେ ହସ୍ତିନାପୁରରେ ଅଶାନ୍ତିର ବୀଜ ପୋତା ହେବାର ସମସ୍ତ ଉଦ୍ୟମ ଚାଲିଥାଏ । ଇନ୍ଦ୍ରପ୍ରସ୍ଥରୁ ଫେରିବା ପରେ ଦୁର୍ଯ୍ୟୋଧନ ପୂର୍ବାପେକ୍ଷା ଅଧିକ ହିଂସ୍ର, ଅଧିକ ପରଶ୍ରୀକାତର ହୋଇପଡ଼ିଥାନ୍ତି । ଇନ୍ଦ୍ରପ୍ରସ୍ଥରେ ସେ ଦେଖିଲେ କଣ, ବଡ଼ ବଡ଼ ହୀରା, ନୀଳା, ମୋତି, ମାଣିକ, ନବରତ୍ନମୟୀ ରାଜପ୍ରସାଦ । ସର୍ବୋପରି ସଭାଗୃହ ସେଠାରେ ସେ କିପରି ଜଳକୁ ଭୂମି ବୋଲି ବିଚାରି ତା ଭିତରକୁ ପଶିଗଲେ, କିପରି ତାଙ୍କର ପୋଷାକପତ୍ର ଓଦା ହୋଇଗଲା । ପୁଣି କାନ୍ଥକୁ ଦୁଆର ବୋଲି ଭାବି ତାହା ଅତିକ୍ରମ କରିବାବେଳେ ତାଙ୍କର ମୁଣ୍ଡ କାନ୍ଥରେ ବାଜିଗଲା । ତାପରେ ଭୀମ ଓ ଦ୍ରୌପଦୀଙ୍କର ତାଚ୍ଛଲ୍ୟପୂର୍ଣ୍ଣ ହସ—ଏସବୁ ଭାବିଲାବେଳକୁ ତାଙ୍କର ରକ୍ତ ଟକ୍ ଟକ୍ ଫୁଟୁଥାଏ । କ୍ରୋଧରେ ଚକ୍ଷୁ ରକ୍ତବର୍ଣ୍ଣ ହୋଇଯାଉଥାଏ ।

ସେ ଭାବୁଥାନ୍ତି ନା ଏ ଲଜ୍ଜା, ଏ ଅପମାନ ସହ୍ୟ କରିବା ଅସମ୍ଭବ । ଯେ କୌଣସି ପ୍ରକାରେ ପାଣ୍ଡବମାନଙ୍କୁ ଉପଯୁକ୍ତ ଶାସ୍ତି ଦେବାକୁ ହେବ । ଇନ୍ଦ୍ରପ୍ରସ୍ଥର ଧନସମ୍ପଦ ଲୁଟି ଆଣିବାକୁ ପଡ଼ିବ ।

ଦୁର୍ଯ୍ୟୋଧନ ପାଣ୍ଡବ ମାନଙ୍କର ବିନାଶର ଏହିପରି ନାନା ଯୋଜନା କରୁଥିଲାବେଳେ ଆସି ଉପସ୍ଥିତ ହୋଇଗଲେ ଶକୁନି, ତାଙ୍କର ପ୍ରଧାନ ମନ୍ତ୍ରଣାଦାତା ।

ଶକୁନିଙ୍କୁ ଦେଖି ଦୁର୍ଯ୍ୟୋଧନ ତାଙ୍କର ମନୋଭାବ ଜଣାଇଲେ ଏବଂ ଦ୍ରୋଣ, କର୍ଣ୍ଣ ଓ ଅଶ୍ୱତ୍ଥାମା ପ୍ରଭୃତି ବୀରମାନଙ୍କ ସାହାଯ୍ୟରେ ପାଣ୍ଡବମାନଙ୍କୁ ଶୋଚନୀୟ ଭାବରେ ପରାସ୍ତ କରିବାର କଳ୍ପନା ପ୍ରକାଶ କଲେ । ଏଥିରେ ମନ୍ତ୍ରୀଙ୍କର ମନ ମାନିଲା ନାହିଁ ।

ସେ କହିଲେ ପାଣ୍ଡବମାନଙ୍କୁ ଜୟ କରିବା କାଠିକରପାଠ, ଯୁଧିଷ୍ଠିରଙ୍କୁ ଇନ୍ଦ୍ରପ୍ରସ୍ଥରୁ ବାହାର କରିଦେଇ ତାଙ୍କର ସମସ୍ତ ବିଭବ କରଗତ କରିବାର ଗୋଟିଏ ବଢ଼ିଆ ଉପାୟ ସେ ଜାଣନ୍ତି ।

ଦୁର୍ଯ୍ୟୋଧନ ଅଧୈର୍ଯ୍ୟ ହୋଇଗଲେ । ପଚାରିଲେ, ମାମୁଁ, ସତେ ବିନା ରକ୍ତପାତରେ ଏହା ସମ୍ଭବ ହୋଇପାରିବ ?

ଶକୁନି କହିଲେ ଖୁବ୍ ହୋଇପାରିବ, ଶୁଣ ସେ ଉପାୟ । ଯୁଧିଷ୍ଠିରଙ୍କ ପଶାଖେଳ ନିଶା କିଛି କମ୍ ନୁହେଁ । ହେଲେ କପଟ ଖେଳିବାକୁ ହୁଏ, ଖେଳରେ କ କୌଶଳ ପ୍ରୟୋଗ କରିବାକୁ ପଡ଼େ ତାଙ୍କୁ ଜଣାନାହିଁ । ଆମ୍ଭେମାନେ ଯଦି ତାଙ୍କୁ କୌଣସି ପ୍ରକାରେ ଖେଳିବାପାଇଁ ଡ଼କାଇ ଆଣିବା ତେବେ କାମ ଫତେ । ମୁଁ ତୁମ ପକ୍ଷରୁ ଖେଳିବି, ବାଜି ରଖି ଖେଳ ହେବ । ମୋ ପାଶଙ୍ଗରେ କିଏ ସେ ପଡ଼ିବ ? ବିଚରା ଯୁନାପିଲାପରି ସବୁ ବଢ଼ାଇ ଦେବ । ହେଲେ ଗୋଟିଏ କଥା ତୁମ ବାପାଙ୍କୁ ଏଥିରେ ରାଜି କରାଇବାକୁ ହେବ । ସେତିକି ହୋଇଗଲେ ଦେଖିବ ମୋର କରାମତି ।

ଦୁର୍ଯ୍ୟୋଧନର ଅଶାନ୍ତ ହୃଦୟରେ କିଏ ଯେପରି ଶାନ୍ତିର ବାରି ଢାଳିଦେଲା ।

ଧୃତରାଷ୍ଟ୍ର ସେଦିନ ସିଂହାସନରେ ବସିଥାନ୍ତି, ନିକଟରେ ସଞ୍ଜୟ । ପ୍ରଧାନ ଆଲୋଚ୍ୟ ବିଷୟ ହେଉଥାଏ ରାଜସୂୟ ଯଜ୍ଞ । ସଞ୍ଜୟ କହୁଥାନ୍ତି ଧୃତରାଷ୍ଟ୍ର ଶୁଣୁଥାନ୍ତି । ଶୁଣୁଣୁ ବେଳେ ବେଳେ ତାଙ୍କର କୋହ ଉଠୁଥାଏ । ଏତେ ଅଳ୍ପ ସମୟ ମଧ୍ୟରେ ପାଣ୍ଡବ ମାନଙ୍କର ଏତେ ସମୃଦ୍ଧି, ଏତେ ପ୍ରତିପତ୍ତି ! ତା ତୁଳନାରେ ତାଙ୍କ ପୁଅମାନଙ୍କର କଣ ଅଛି ? ଅବଶ୍ୟ ଦୁର୍ଯ୍ୟୋଧନ ହସ୍ତିନାର ରାଜା । ଧନସମ୍ପତ୍ତି କମ ନାହିଁ-ଭୀଷ୍ମ, ଦ୍ରୋଣ, କର୍ଣ୍ଣ, କୃପ, ଅଶ୍ୱତ୍ଥାମା ପ୍ରଭୃତି ବୀରମାନେ ତାଙ୍କର ସାହାପକ୍ଷ । ବଳିଲେ ମୁହୂର୍ତ୍ତିକେ ଦିଗ୍ ବିଜୟ କରିପାରିବେ । ତଥାପି ଧୃତରାଷ୍ଟ୍ରଙ୍କର ମନେ ହେଉଥାଏ ସତେ ଯେପରି ଦୁର୍ଯ୍ୟୋଧନ ନିରକ୍ଷ, ଅସହାୟ ତା'ର କିଛି ନାହିଁ ।

ଏହି ସମୟରେ ଦୁର୍ଯ୍ୟୋଧନ ଓ ଶକୁନି ପ୍ରବେଶ କଲେ, ସଞ୍ଜୟ କହିଦେଲେ ଶକୁନି ଓ ଦୁର୍ଯ୍ୟୋଧନ ସାଷ୍ଟାଙ୍ଗ ପ୍ରଣିପାତ ହେଉଛନ୍ତି । ବୃଦ୍ଧ ଆଶୀର୍ବାଦ କଲେ, 'ଧନଜନ ଗୋପ ଲକ୍ଷ୍ମୀ ଚତୁର୍ବର୍ଗଲାଭକର ।''

ଶକୁନି କହିଲେ ଖାଲି ଆଶୀର୍ବାଦରେ କିଛି ହୁଏ ନାହିଁ । ଦୁର୍ଯ୍ୟୋଧନ ବର୍ତ୍ତମାନ ଯେପରି ଦୁଃଖରେ, ଉଦ୍‌ବେଗରେ କାଳାତିପାତ କରୁଛନ୍ତି, ଏଥିରେ ମଧ୍ୟ ଆପଣ ମାରିବ । ଏ ଉଦାସୀତାର କାରଣ କଣ ?

"ଦୁଃଖ, କାହିଁକି ମୁଁ ତ ଦୁଃଖର କାରଣ କିଛି ଦେଖୁନାହିଁ । ତାର ନାହିଁ କଣ, ସସାଗରଧରା ତାର ପାଦତଳେ—ଧୃତରାଷ୍ଟ୍ର ଆଶ୍ୱାସନା ଦେଲେ । ପିତାଙ୍କର ଏହି ଆଶ୍ୱାସନା

ଦୁର୍ଯ୍ୟୋଧନ ହୃଦୟରେ ଉଠୁଥିବା ଦୁଃଖର ଲହରୀ ଆତୁର ସୂଚିତ କରିଦେଲା । ଅଭିମାନର ସ୍ୱରରେ ସେ ଉତ୍ତର ଦେଲେ ହଁ, ମୋର ତ ଚକ୍ଷୁ ଅଛି—ଅସ୍ୱଚ୍ଛ କଣ ? ଘଣ୍ଟେ ଖାଇ ଘଣ୍ଟେ ପିନ୍ଧି ପଡ଼ି ରହିଛି । ପାଣ୍ଡବମାନଙ୍କର ବଇଭ, ଗୌରବ ଉନ୍ନତିଙ୍କ ପର୍ବତର ଶିଖର ଦେଶ ସ୍ପର୍ଶ କରୁଥିଲାବେଳେ ମୁଁ ଭୂଇଁରେ ଅଣ୍ଟାଳ ହେଉଛି । ତାହା ଅଛି ସେଥିରେ ସନ୍ତୁଷ୍ଟ ରହିବା କ୍ଷତ୍ରିୟର ଲକ୍ଷଣ ନୁହେଁ, ବୀରର ଧର୍ମ ନୁହେ । ଯେଉଁମାନେ କାପୁରୁଷ, ଦୁର୍ବଳ ସେମାନେ ହିଁ ଏପରି ଅଳ୍ପସନ୍ତୋଷ ଲାଭ କରିଥାନ୍ତି ।''

ପୁତ୍ରର ଅଭିମାନରେ ବୃଦ୍ଧ ଧୃତରାଷ୍ଟ୍ର ଥରିପଡ଼ିଲେ । ସେ ଥରଥର ଗଳାରେ କହିଲେ, ତେବେ କଣ ତୋର ଇଚ୍ଛା ?

ଶକୁନି ଏହି ସୁଯୋଗ ଖୋଜୁଥିଲେ । ହଠାତ୍ କହି ପକାଇଲେ ଦୁର୍ଯ୍ୟୋଧନ ଚାହାନ୍ତି ଯୁଧିଷ୍ଠିରଙ୍କ ସଙ୍ଗେ ପଶା ଖେଳିବା ପାଇଁ । ଯଦି ସେଥିକି ଅନୁମତି ଦେବେ ତେବେ ସେ ସନ୍ତୁଷ୍ଟ ହେବେ ।

ଧୃତରାଷ୍ଟ୍ର ପରିଷ୍କାର ଭାବରେ ବୁଝାଇଲେ ପଶାଖେଳରେ ଅପକାରିତା । ଏହାଦ୍ୱାରା ଭବିଷ୍ୟତରେ କିପରି ଘୋର ଅମଙ୍ଗଳ ସାଧିତ ହେବ ତାହା ମଧ୍ୟ ଚେତାଇ ଦେଲେ ।

ଦୁର୍ଯ୍ୟୋଧନଙ୍କର ଏକା ଜିଦ୍—ପଶାଖେଳ ହେବ । ଶେଷରେ ପୁତ୍ରର ସନ୍ତୋଷ ବିଧାନ ପାଇଁ ବୃଦ୍ଧ ରାଜା ଅନୁମତି ଦେଲେ । ସେତିକି ନୁହେ, ବିଦୁର ନିଜେ ଯାଇ ଯୁଧିଷ୍ଠିରଙ୍କୁ ଏହି ଖେଳ ପାଇଁ ଆମନ୍ତ୍ରଣ କରିବା ନିମିତ୍ତ ପାଇଁ ମଧ୍ୟ ସ୍ଥିର କରିଦେଲେ । ଏଣେ ପଶା ଖେଳ ପାଇଁ ଯେପରି ଏକ ସୁଶୋଭିତ ଗୃହ ନିର୍ମାଣ କରାଯାଏ ସେଥିପାଇଁ ମଧ୍ୟ ବରାଦ କରିବାକୁ ସ୍ଥପତିଙ୍କୁ ଆଦେଶ ଦେଲେ ।

ହସ୍ତିନାପୁରରେ ପଶା ଖେଳ ପାଇଁ ସମସ୍ତ ବନ୍ଦୋବସ୍ତ ଅଚିରେ ସରିଲା । ବିଦୁର ଇନ୍ଦ୍ରପ୍ରସ୍ଥରେ ପହଞ୍ଚିବା ପୂର୍ବରୁ ଯୁଧିଷ୍ଠିରଙ୍କର ମାନସିକ ଅବସ୍ଥା ସେତେ ଭଲ ନ ଥାଏ । ସେ ଭାବୁଥାନ୍ତି, ବେଦବ୍ୟାସଙ୍କର ଭବିଷ୍ୟତବାଣୀକୁ କିପରି ଏଡ଼ାଇ ଦେବାକୁ ହେବ । ତା' କଣ ସମ୍ଭବ ? ମୁନିଋଷିମାନେ ସର୍ବଦା ଉଚ୍ଚାରଣ କରୁଥାନ୍ତି—ଶାନ୍ତି, ଶାନ୍ତି, ଶାନ୍ତି,—କାହିଁ ସେ ଶାନ୍ତି ? ତାଙ୍କର ମନେ ହେଉଥାଏ ଦୁଇଟି ଯୁଦ୍ଧ ମଧ୍ୟରେ ଶାନ୍ତି ହେଉଛି ଯୁଦ୍ଧ ବିରତି ମାତ୍ର ।

ତାଙ୍କର ଚିନ୍ତାର ପ୍ରଧାନ ବିଷୟ ଦୁର୍ଯ୍ୟୋଧନ ଏବଂ ତାଙ୍କ ଭାଇମାନଙ୍କ ମଧ୍ୟରେ ଯେଉଁ ଈର୍ଷା, ହିଂସାଦ୍ୱେଷ ରହିଅଛି ତାହା ଯଦି କୌଣସି ମତେ ଦୂର କରିପାରନ୍ତେ ତେବେ ହୁଏତ ଶାନ୍ତି ଆସିପାରେ । ତାହା କଣ ଏତେ ସହଜ ? ଦୁର୍ଯ୍ୟୋଧନ ଚାହିଁଛି ଇନ୍ଦ୍ରପ୍ରସ୍ଥକୁ ସେମାନଙ୍କଠାରୁ ଛଡ଼ାଇ ନେବାପାଇଁ । ଏଥିରେ କିପରି ସେ ସମ୍ମତ ହେବେ ? ଇନ୍ଦ୍ରପ୍ରସ୍ଥ ତାଙ୍କର ପୈତୃକ ସମ୍ପତ୍ତି ନୁହେଁ । ପାଣ୍ଡବଙ୍କ ନିଜ ଏହା ଗଢ଼ିଛନ୍ତି । ଦୁର୍ଗମ

ଅରଣ୍ୟକୁ ବଦଳାଇ ଦେଇଛନ୍ତି ଏକ ସୁରମ୍ୟ ନଗରୀରେ । ଏହା ପରିତ୍ୟାଗ କରିବାପାଇଁ ସେ କପରି ଭାଇମାନଙ୍କୁ ପରାମର୍ଶ ଦେବେ—ସେମାନେ ବା ତାହା ଶୁଣିବେ କାହିଁକି ?

ଦୁର୍ଯ୍ୟୋଧନଙ୍କ ପାଇଁ ମଧ୍ୟ ତାଙ୍କ ହୃଦୟରେ ଦୁଃଖ ଅସିଲା । ସେ ଯଦି ଅନ୍ଧ ପିତାଙ୍କର ସନ୍ତାନ ହୋଇ ନ ଥାନ୍ତେ ତେବେ ରାଜଗାଦିରେ ବି ତାଙ୍କର ବସିବା ଦରରେ ଅନ୍ୟ କୌଣସି ପ୍ରତ୍ୟବାୟ ନଥିଲା । ଭାଗ୍ୟର ବିଡ଼ମ୍ବନା- ବିନା ଦୋଷରେ ସେ ସିଂହାସନ ହରାଇଲେ । ଦୁର୍ଯ୍ୟୋଧନଙ୍କର କ୍ରୋଧ, ଘୃଣା ଏଇଥିପାଇଁ । ମନୁଷ୍ୟର ମନୁଷ୍ୟପ୍ରତି ଘୃଣାହିଁ ସବୁ ଅନର୍ଥର ମୂଳ । ଏହି ଘୃଣାଭାବ ତା ହୃଦୟରେ ସୃଷ୍ଟିର ଆଦ୍ୟରୁ ରହିଆସିଛି । ସେଥିପାଇଁ କେତେ ଯୁଦ୍ଧର ସୂତ୍ରପାତ ହୋଇଛି । କେତେ ରକ୍ତର ନଈ ବୋହି ଯାଇଛି । ତଥାପି ଏ ଘୃଣାର ଅନ୍ତ ନାହିଁ କି ଯୁଦ୍ଧର ବିରାମ ନାହିଁ ।

ପ୍ରଭୁତ୍ୱ ବିସ୍ତାର ଯୁଦ୍ଧର ଅନ୍ୟ ଏକ କାରଣ । କାର୍ତ୍ତବୀର୍ଯ୍ୟ ଜନକର ପ୍ରଭୁତ୍ୱ ବିସ୍ତାର କରିବା ପାଇଁ ସମୁଦାୟ ଆର୍ଯ୍ୟାବର୍ତ୍ତକୁ ଏକ କଂସେଇଖାନାରେ ପରିଣତ କଲା—ତଥାପି ଶାନ୍ତି ଆସିଲା ନାହିଁ । ପରଶୁରାମ ଏକୋଇଶଥର ସାରା ଭାରତକୁ ନିକ୍ଷତ୍ରିୟ କଲେ—ଏହି ଉଦ୍ଦେଶ୍ୟରେ ଯେ ଆଉ ଯୁଦ୍ଧ କରିବା ପାଇଁ କେହି ସାହସ କରିବେ ନାହିଁ । ତାଙ୍କର ଏହି ଉଦ୍ଦେଶ୍ୟ ବିଫଳ ହେଲା । ଲୋକେ ଭାବୁଥିଲେ ଜରାସନ୍ଧର ମୃତ୍ୟୁ ପରେ ଶାନ୍ତି ପ୍ରତିଷ୍ଠିତ ହେବ । କାହିଁ ତାହାତ ସମ୍ଭବ ହେଲାନାହିଁ । ତାଙ୍କପରେ ଶିଶୁପାଳର ଆବିର୍ଭାବ ହେଲା । ତାର ବଳବୀର୍ଯ୍ୟରେ ସମସ୍ତେ ଆତଙ୍କିତ ହେଲେ । ରାଜସୂୟ ଯଜ୍ଞ ବେଳେ ସେ ପିତାମହ ଭୀଷ୍ମ ଓ କୃଷ୍ଣଙ୍କପ୍ରତି ଯେଉଁ ବ୍ୟବହାର କଲା ତାହା ଆର୍ଯ୍ୟ ସଂସ୍କୃତିର ପରିପନ୍ଥୀ । ତାଙ୍କର ଏହି ଗର୍ବ ପାଇଁ ସେ ଉପଯୁକ୍ତ ଶାସ୍ତିପାଇଲା । କୃଷ୍ଣ ତାର ଗଣ୍ଡିରୁ ମୁଣ୍ଡକୁ ଅଲଗା କରିଦେଲେ, ତଥାପି ଶାନ୍ତି ସୁଦୂର ପରାହତ ।

ମହର୍ଷି ବ୍ୟାସଦେବ କହିଯାଇଛନ୍ତି ନିଶ୍ଚିତଭାବରେ ଏକ ପ୍ରଳୟଙ୍କରୀ ଯୁଦ୍ଧ ହେବ—ଆଉ ସେହି ଯୁଦ୍ଧରେ ସହସ୍ର ସହସ୍ର ସଂଖ୍ୟାରେ କ୍ଷତ୍ରିୟ ନିପାତ ହେବେ—ଆଉ ଏହି ଯୁଦ୍ଧର ମୂଳକାରଣ ହେବେ ସେ ନିଜେ ।

ଯୁଧିଷ୍ଠିର ଆଉ ଭାବିପାରିଲେ ନାହିଁ । ତାଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା । ସେ ମୁଣ୍ଡରେ ହାତରଖି ଅକ୍‌କାହୋଇ ବସି ପଡ଼ିଲେ ।

ଏହିପରି ସମୟରେ ଘର ବାହାରେ ରଥ ରହିବାର ଶବ୍ଦ ଶୁଣାଗଲା । ଦୁଇଜଣ ରଥୀ ହସ୍ତିନାପୁରର ପ୍ରଧାନମନ୍ତ୍ରୀ ବିଦୁରଙ୍କର ଆଗମନ ଖବର ଦେଲେ ।

ବିଦୁରଙ୍କର ଅପ୍ରତ୍ୟାଶିତ ଆଗମନ ସମ୍ବାଦରେ ଭାଇମାନଙ୍କ ମଧ୍ୟରେ ଗୁଞ୍ଜନ ଖେଳିଗଲା । ଯୁଧିଷ୍ଠିର ଭାବିଲେ କକାଙ୍କର ହଠାତ୍ ଆବିର୍ଭାବ ଏକ ଗୁରୁତର ସଙ୍କଟର ସୂଚନା । ଯାହାହେଉ ଭାଇମାନେ ବିଦୁରଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କଲେ ।

ସମସ୍ତେ ଖାଉପିଇ ଆଶ୍ୱସ୍ତ ହେବାପରେ ଯୁଧିଷ୍ଠିର ପଚାରିଲେ—ଏତେ ଶୀଘ୍ର ଆପଣ ହସ୍ତିନାରୁ ଆସି ଆମ୍ଭମାନଙ୍କୁ ଆପ୍ୟାୟିତ କରିବେ ଏ ଧାରଣା ନଥିଲା । ନିଶ୍ଚିତଭାବରେ ଆପଣ କୌଣସି ଗୁରୁତର ସମ୍ବାଦ ଘେନି ଆସିଛନ୍ତି ।

ବିଦୁରଙ୍କ ମୁହଁରେ ବିଷାଦର ରେଖା । ସେ ଧୀର ଅଥଚ ଗମ୍ଭୀର ଭାବରେ ଉତ୍ତର ଦେଲେ ତୁମର ଅନୁମାନ ଯଥାର୍ଥ । ମୁଁ ଯେଉଁ ସମ୍ବାଦ ନେଇ ଆସିଛି ତାହା ବାସ୍ତବିକ ଗୁରୁତର । ପ୍ରଥମେ ଏଥିପାଇଁ ମୁଁ ଅନିଚ୍ଛା ପ୍ରକାଶ କରିଥିଲି, ମାତ୍ର ରାଜ ଆଜ୍ଞା—ଅବଜ୍ଞା କରିବାର ନୁହେଁ । ବାଧ୍ୟ ହୋଇ ଆସିଲି । ତେବେ ଶୁଣ ସେ ସମ୍ବାଦ । ରାଜସୂୟ ଯଜ୍ଞପରେ ଦୁର୍ଯ୍ୟୋଧନ ହସ୍ତିନାରେ ପହଞ୍ଚି ସୃଷ୍ଟିକଲା ଏକ ତୁମୂଳ ଝଡ଼ । ତୁମ୍ଭମାନଙ୍କର ବିଭବ ଦେଖି ଦୁର୍ଯ୍ୟୋଧନ ଅଧିକ ହିଂସ୍ର ହୋଇ ପଡ଼ିଛି । ଯେ କୌଣସି ପ୍ରକାରେ ଏହି ବିଭବରୁ ବଞ୍ଚିତ କରିବା ତାହାର ପ୍ରଧାନ ଲକ୍ଷ୍ୟ । ସେଥିପାଇଁ ଶକୁନିର ପରାମର୍ଶରେ ସେ ତୁମ ସହିତ ପଶା ଖେଳିବା ପାଇଁ ଏକ ଯୋଜନା କରିଛି ଏବଂ ଏଥିପାଇଁ ତୁମ୍ଭଙ୍କୁ ନିମନ୍ତ୍ରଣ କରିବାପାଇଁ ମୋତେ ପଠାଇବା ନିମିତ୍ତ ଧୃତରାଷ୍ଟ୍ରଙ୍କ ଉପରେ ପ୍ରବଳ ଚାପ ପକାଉଛି । ଏହି ପ୍ରସ୍ତାବରେ ପିତାମହ ଭୀଷ୍ମ ଆଦୌ ରାଜିହେଲେ ନାହିଁ । କିନ୍ତୁ ଅତ୍ୟଧିକ ମମତା ବୃଦ୍ଧ ରାଜା ପୁତ୍ରର ପ୍ରସ୍ତାବରେ ରାଜି ହେଲେ—ତେଣୁ ମୋର ଆଗମନ ।

ବର୍ତ୍ତମାନ ଦୁର୍ଯ୍ୟୋଧନର ଉଦ୍ଦେଶ୍ୟ ପରିଷ୍କାର ହୋଇଗଲା । ଭାଇମାନେ ଜାଣି ପାରିଲେ ସେମାନଙ୍କର ବିଭବ ଅପହରଣ କରିବା ପାଇଁ ଏବଂ ସମୃଦ୍ଧିଶାଳୀ ଇନ୍ଦ୍ରପ୍ରସ୍ଥ ସେମାନଙ୍କଠାରୁ ଛଡ଼ାଇ ନେବା ପାଇଁ ଏହା ଏକ ହୀନ ଚକ୍ରାନ୍ତ ।

ଏ ପରିସ୍ଥିତିରେ ଯୁଧିଷ୍ଠିର କଣ କରିବେ ସ୍ଥିର କରି ପାରିଲେ ନାହିଁ । ସେ ଭାବିଲେ ଯଦି ସେ ପଶାଖେଳରେ ଯୋଗଦେବାପାଇଁ ଅସମ୍ମତି ପ୍ରକାଶ କରନ୍ତି ତେବେ କ୍ଷାତ୍ର ଧର୍ମର ଅବମାନନା କରିବାକୁ ହେବ । ପୁଣି ଏହାର ସୁଯୋଗ ନେଇ ଦୁର୍ଯ୍ୟୋଧନ ପ୍ରଚାର କରିବ ଯୁଧିଷ୍ଠିର ପଶାଖେଳ ପାଇଁ ଅସମ୍ମତି ପ୍ରକାଶ କରିବାଦ୍ୱାରା ନିଜର ଭୀରୁତା ପ୍ରକାଶ କରିଛନ୍ତି । ଫଳରେ ରାଜସୂୟ ଯଜ୍ଞ ପରେ ସେ ଯେଉଁ ରାଜଚକ୍ରବର୍ତ୍ତୀ ଉପାଧି ପାଇଛନ୍ତି, ସେଥିପାଇଁ ସେ ଅଯୋଗ୍ୟ । ସେତିକରେ ମଧ୍ୟ ସେ ସନ୍ତୁଷ୍ଟ ହେବ ନାହିଁ । ତାଙ୍କର ଶତ୍ରୁମାନଙ୍କ ସହିତ ହାତ ମିଳାଇ ସେ ଇନ୍ଦ୍ରପ୍ରସ୍ଥ ଆକ୍ରମଣ କରିପାରେ । ଫଳରେ ସଂଘଟିତ ହେବ ଏକ ରକ୍ତାକ୍ତ ଯୁଦ୍ଧ । ମହର୍ଷି ବ୍ୟାସଙ୍କର ଭବିଷ୍ୟତ ବାଣୀ ସତ୍ୟ ହେବ । ଯଦି ସେ ଏହି ପ୍ରସ୍ତାବରେ ରାଜି ହୁଅନ୍ତି ଏବଂ ଏକ ଆସନ୍ନ ଯୁଦ୍ଧ ଏଡ଼ାଇ ଦେବାପାଇଁ ଚେଷ୍ଟା କରନ୍ତି, ତାଙ୍କର ଭାଇମାନେ, ଦ୍ରୌପଦୀ, ମାତା କୁନ୍ତୀ ସମସ୍ତ ହୁଏତ ଦାଣ୍ଡର ଭିକାରୀ ହୋଇପାରନ୍ତି ।

ଅବଶ୍ୟ ଭାଇମାନେ ତାଙ୍କ ନିଷ୍ପତ୍ତି ମାନିବାକୁ ପ୍ରତିଶ୍ରୁତିବଦ୍ଧ । ଏହି ସୁବିଧାର ସୁଯୋଗ ନେଇ ଭାଇମାନଙ୍କ ଗଳାରେ ଛୁରି ଦେବା ସେ ଚାହାନ୍ତି ନାହିଁ ।

ଏଣେ ଭାଇମାନେ ନେଂଷ୍ଟଙ୍କର ନିଷ୍ପତ୍ତି ଶୁଣିବାକୁ ଉଦ୍‌ଗ୍ରୀବ ହୋଇ ବସିଛନ୍ତି । ଯୁଧିଷ୍ଠିର କିଛିକ୍ଷଣ ନୀରବ ରହିବା ପରେ କହିଲେ ସତେ ମୁଁ ଇନ୍ଦ୍ରପ୍ରସ୍ଥର ରାଜା ହେବାପାଇଁ ସମ୍ପୂର୍ଣ୍ଣ ଅଯୋଗ୍ୟ । ତୁମେ ଏହାର ଦାୟିତ୍ୱ ନିଅ । ଆଜି ମୁଁ ଯେଉଁ ନିଷ୍ପତ୍ତି ନେବାପାଇଁ ଯାଉଛି ତଦ୍ୱାରା ତୁମର ଯଥେଷ୍ଟ କ୍ଷତି ହେବାର ଆଶଙ୍କା ଅଛି । ତେଣୁ ତୁମ୍ଭେମାନେ ମୋର ନିଷ୍ପତ୍ତି ମାନିବା ପାଇଁ ଯେଉଁ ପ୍ରତିଶ୍ରୁତି ଦେଇଛ ସେଥିରୁ ମୁଁ ତୁମ୍ଭମାନଙ୍କୁ ମୁକ୍ତ କରିଦେଲି । କଣ ତୁମ୍ଭମାନଙ୍କର ଅଭିମତ ? ଯୁଧିଷ୍ଠିରଙ୍କର କଣ୍ଠସ୍ୱର ବିଷାଦଭରା ।

ଯୁଧିଷ୍ଠିରଙ୍କର କଥା ଶୁଣି କୁନ୍ତୀ ଦେବୀ ଆଉ ସମ୍ଭାଳି ହୋଇ ରହିପାରିଲେ ନାହିଁ । ତାଷ୍ଟ ଗଦଗଦ୍ ସ୍ୱରରେ ସେ କହିଲେ, ଯୁଧିଷ୍ଠିର ତା କପର ହେବ ? ତୁମ୍ଭେମାନେ କପରି ଏକାଠି ରହିବ ଏଥିପାଇଁ ମୁଁ ଆଜି ପର୍ଯ୍ୟନ୍ତ ଚେଷ୍ଟା କରିଆସିଛି । ସମ୍ପଦରେ ବା ବିପଦରେ ତୁମ ପାଞ୍ଚଭାଇଙ୍କ ମଧ୍ୟରେ କୌଣସି ଭେଦ ନ ରହୁ ଏହା ମୋର ଏକାନ୍ତ ଇଚ୍ଛା । ଯଦି ତା ନହୁଏ ତେବେ ମୋର ସମସ୍ତ ଚେଷ୍ଟା ବିଫଳ ହୋଇଯିବ । ଅର୍ଜୁନ ମାତାଙ୍କୁ ସମର୍ଥନ କଲେ । ଅନ୍ୟ ଭାଇମାନେ ନିଷ୍ପତ୍ତି ମାନିବାକୁ ପ୍ରତିଶ୍ରୁତି ଦେଲେ । ଦ୍ରୌପଦୀ ମଧ୍ୟ ଏଥିରେ ନିଜର ସ୍ୱୀକୃତି ପ୍ରଦାନ କଲେ ।

ଭାଇମାନଙ୍କର ଏପରି ଆଚରଣ ଦେଖି ଯୁଧିଷ୍ଠିର ସ୍ତବ୍ଧ ହୋଇଗଲେ—ଏତେ ମମତା, ଏତେ ସ୍ନେହ ଏମାନଙ୍କର ମୋ ପ୍ରତି । ଏପରି ଭାଇମାନଙ୍କୁ ମୁଁ ନିଶ୍ଚିତ ବିପଦ ମୁହଁକୁ ଠେଲି ଦେବାକୁ ଯାଉଛି—

ଯୁଧିଷ୍ଠିରଙ୍କର ଆଖି ଛଳଛଳ ହୋଇଗଲା । ଶେଷରେ ସେ ଶେଷ ନିଷ୍ପତ୍ତିରେ ପହଞ୍ଚିଲେ । ଯାହାହେଉ ପଛକେ ତାଙ୍କୁ କ୍ଷାତ୍ରଧର୍ମ ରକ୍ଷା କରିବାକୁ ହେବ । ଯୁଦ୍ଧ ଏଡ଼ାଇ ଦେବାକୁ ପଡ଼ିବ । ମହାମୁନି ବେଦ ବ୍ୟାସଙ୍କର ଭବିଷ୍ୟତ ବାଣୀ ଅସାର ବୋଲି ପ୍ରତିପାଦନ କରିବାକୁ ହେବ ।

ପଶାଖେଳରେ ଯୋଗଦେବାପାଇଁ ସେ ସ୍ୱୀକୃତି ପ୍ରଦାନ କଲେ । ବିଦୁର ମନ ଦୁଃଖରେ ହସ୍ତିନାପୁରକୁ ଫେରିଆସିଲେ ।

ଯଥାସମୟରେ ଏକ ସୁସଜ୍ଜିତ ସଭାଗୃହରେ ଖେଳ ଆରମ୍ଭହେଲା । ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଧୃତରାଷ୍ଟ୍ର ପ୍ରଭୃତି ଏଠାରେ ଉପସ୍ଥିତ ଥାନ୍ତି । ସମସ୍ତେ ଜାଣନ୍ତି ଏହି ଖେଳର ପରିଣତି ଭୟାବହ ହେବ ମାତ୍ର କେହି ଏହା ବାରଣ କରିପାରିଲେ ନାହିଁ ।

ଖେଳରେ ଯୁଧିଷ୍ଠିର ସର୍ବସ୍ୱ ହାରିଲେ । ଏପରିକି ଦ୍ରୌପଦୀଙ୍କୁ ବାଜି ରଖି ମଧ୍ୟ ହାରିଗଲେ । ଏହାପରେ ଦ୍ରୌପଦୀଙ୍କୁ ସଭାଗୃହକୁ ବଳାତ୍କାରରେ ଅଣାଗଲା ଏବଂ ସମସ୍ତଙ୍କ ଉପସ୍ଥିତିରେ ତାଙ୍କୁ ବିବସନ କରାଯିବାର ମଧ୍ୟ ଚେଷ୍ଟା କରାଗଲା । ଉଦ୍ଦେଶ୍ୟ, ପାଣ୍ଡବମାନଙ୍କୁ

ସର୍ବସମକ୍ଷରେ ଅପମାନିତ କରିବା, ମାତ୍ର ଦୁର୍ଯ୍ୟୋଧନଙ୍କର ଏହି ମନ୍ଦ ଅଭିପ୍ରାୟ ଚରିତାର୍ଥ ହୋଇନାହିଁ । ଚରମ ବିପଦକାଳରେ ସ୍ୱୟଂ ଶ୍ରୀକୃଷ୍ଣ ଦ୍ରୌପଦୀଙ୍କ ସହାୟକ ହେଲେ । କୋଟି ବସ୍ତ୍ର ଦେଇ ତାଙ୍କର ଲଜ୍ଜା ନିବାରଣ କଲେ ।

ଏହି ଘଟଣାରେ ଧୃତରାଷ୍ଟ୍ର ବିଚଳିତ ହୋଇ ପଡ଼ିଲେ । ସଭାଗୃହରେ ଯେଉଁ ଯାହା ଘଟିଗଲା, ସେଥିରେ ସେ ଆଶଙ୍କା କଲେ ଯେ ଅଚିରେ ତାଙ୍କର ବଂଶ ଧ୍ୱଂସହେବ । ତେଣୁ ସେ ଯୁଧିଷ୍ଠିରଙ୍କୁ ଡାକି ତାଙ୍କୁ ତାଙ୍କର ସମସ୍ତ ଅପହୃତ ଦ୍ରବ୍ୟ ଫେରାଇ ଦେଲେ ଏବଂ ଆନନ୍ଦରେ ଇନ୍ଦ୍ରପ୍ରସ୍ଥକୁ ଯିବାପାଇଁ ଅନୁମତି ଦେଲେ । ଅତି ମଧୁ ସାନ୍ତ୍ୱନା ଦେଇ କହିଲେ ଯେଉଁନର ଦୁଃଖଦାୟକ ଘଟନା ସେ ଯେପରି ଭୁଲିଯାଆନ୍ତି ।

ଯୁଧିଷ୍ଠିର ଏଥିରେ ଆନନ୍ଦିତ ହୋଇ ଭାଇମାନଙ୍କୁ ଓ ଦ୍ରୌପଦୀଙ୍କୁ ସଙ୍ଗରେ ନେଇ ଇନ୍ଦ୍ରପ୍ରସ୍ଥ ଫେରିଗଲେ ।

ଏହି ଘଟଣାରେ ଦୁର୍ଯ୍ୟୋଧନ କ୍ଷିପ୍ତ ହୋଇପଡ଼ିଲେ । ନିଜର ପିତାଙ୍କୁ ଅତି କଟୁ ବାକ୍ୟରେ ସମାଲୋଚନା କରି କହିଲେ, ତାଙ୍କର ଉଦ୍ଦେଶ୍ୟ ଚରିତାର୍ଥ ହେବାକୁ ଯାଉଥିଲାବେଳେ ସେ ସବୁ ଭଣ୍ଡୁର କରିଦେଲେ । ଧୃତରାଷ୍ଟ୍ର ସବୁ ସହିପାରନ୍ତି ମାତ୍ର ପୁଅର ଦୁଃଖ ସହିପାରନ୍ତି ନାହିଁ । ଏହାହିଁ ତାଙ୍କର ଚରମ ଦୁର୍ବଳତା । ଦୁର୍ଯ୍ୟୋଧନ ଅତି ଜଣ ଗୁହାରି କୋଲି ପରୁରିବାରେ ସେ ଆଉଥରେ ପଶାଖେଳିବା ପାଇଁ ଯୁଧିଷ୍ଠିରଙ୍କୁ ନିମନ୍ତ୍ରଣ କରିବାକୁ ଅନୁରୋଧ କଲେ ।

ତାହାହିଁ ହେଲା । ଯୁଧିଷ୍ଠିର ଇନ୍ଦ୍ରପ୍ରସ୍ଥରେ ପହଞ୍ଚି ନପହଞ୍ଚୁଣୁ ଦୂତ ଆସି ଖବର ଦେଲା ଯେ ଧୃତରାଷ୍ଟ୍ରଙ୍କର ଇଚ୍ଛା ଆଉଥରେ ପଶାଖେଳ ହେବ ।

ଯୁଧିଷ୍ଠିର ଯେପରି ଜ୍ଞାନୀ ସେହିପରି ଦୂରଦୃଷ୍ଟିସମ୍ପନ୍ନ । ବାଜି ରଖି ପଶା ଖେଳିବା ଦ୍ୱାରା ଅଳ୍ପ ସମୟ ପୂର୍ବେ ତାଙ୍କର କପରି ସର୍ବନାଶ ହୋଇଥିଲା ତାହା ସେ ଭୁଲିଯାଇ ନଥିଲେ । ତଥାପି ସେ ଏହି ନିମନ୍ତ୍ରଣ ରକ୍ଷାକଲେ । ଏହାଦ୍ୱାରା ତାଙ୍କର ଯେ ବୁଦ୍ଧି ଜ୍ଞାନ ସବୁ ଲୋପ ପାଇ ଯାଇଥିଲା ଏହା କେହି ଅସ୍ୱୀକାର କରିପାରିବେ ନାହିଁ ।

ଦୁଃଖ ଦୁର୍ଦ୍ଦଶା ଭୋଗ କରିବାକୁ ଥିଲେ ଅତି ବଡ଼ ଲୋକଙ୍କର ମଧ୍ୟ ବୁଦ୍ଧି ଲୋପ ପାଇ ଯାଇଥାଏ । ରାମଚନ୍ଦ୍ର ଥିଲେ ପୁରୁଷୋତ୍ତମ । ବୁଦ୍ଧି, ବଳ୍ୟରେ ତାଙ୍କ ସହିତ ସେତେବେଳେ କେହି ସମକକ୍ଷ ନଥିଲେ । ତଥାପି ଯେତେବେଳେ ସୀତା ସୁନା ହରିଣ ଧରି ଆଣିବାକୁ ତାଙ୍କୁ ଅନୁରୋଧ କଲେ, ସେ ଯେପରି ତାଙ୍କର ସମସ୍ତ ଜ୍ଞାନ ହରାଇ ବସିଲେ । ସୁନା ହରିଣ ଜାତ ହେବା ଅସମ୍ଭବ । ତଥାପି ସୀତାଙ୍କ କଥାରେ ସେ ତା ପଛେ ପଛେ ଗୋଡ଼ାଇଲେ । ଫଳରେ ହେଲା ସୀତା ହରଣ—ରାବଣର ସର୍ବଂଶ ଲୋପ ।

ରାମଚନ୍ଦ୍ର ଯେତେବେଳେ ଏପରି ଭୁଲ କରିଥିଲେ ଯୁଧିଷ୍ଠିର ଭୁଲକରିବାଟା ଅସ୍ୱାଭାବିକ ବୋଲି କୁହାଯାଇ ନପାରେ ।

ଦ୍ୱିତୀୟ ଥର ପଶାଖେଳରେ ବାଜିରଖିଲେ ଯେ ଖେଳରେ ଯେ ହାରିବେ ସେ ବାର ବର୍ଷ ବନବାସ ଯିବେ ଏବଂ ଏକ ବର୍ଷ ଅଜ୍ଞାତବାସରେ କଟାଇବେ । ଏହି ଅଜ୍ଞାତ ବାସ ସମୟରେ ସେ ଯଦି ଚିହ୍ନାପଡ଼ିଯାନ୍ତି ତେବେ ଆଉଥରେ ବାର ବର୍ଷ ବନବାସ ।

ଏଥର ମଧ୍ୟ ଯୁଧିଷ୍ଠିର ହାରିଲେ । ଫଳରେ ଭାଇ ଓ ସ୍ତ୍ରୀଙ୍କୁ ନେଇ ତାଙ୍କୁ ବନବାସ କରିବା ପାଇଁ ପଡ଼ିଥିଲା । ଏହି ଘଟଣାରେ ହସ୍ତିନାପୁରବାସୀ ମର୍ମାହତ ହେଲେ । ପିତାମହ ଭୀଷ୍ମ ଏକ ଆସନ୍ନ ବିପଦର ଆଶଙ୍କାରେ ଶିହରି ଉଠିଲେ । ଧୃତରାଷ୍ଟ୍ର ଘୋର ଉଦ୍‌ବେଗରେ କାଳାତିପାତ କଲେ । ମାତ୍ର ସମସ୍ତେ ଯେପରି ନିରୁପାୟ । କେହି ଏହା ବନ୍ଦ କରିପାରିଲେ ନାହିଁ । କେବଳ ଭବିଷ୍ୟତ ବିପଦର କରାଳ ମୂର୍ତ୍ତି ଯେପରି ଆଗେଇ ଆସୁଥିବାର ସେମାନେ ଅନୁଭବ କଲେ ।

### ଯୁଦ୍ଧପାଇଁ ପ୍ରସ୍ତୁତ

କାମ୍ୟକ ବନ । ଗଛପତ୍ର ପୁଷ୍ପଫଳରେ ଭରପୂର । ବନ୍ୟଜନ୍ତୁ ପରିପୂର୍ଣ୍ଣ ଏହି ବନରେ ପାଣ୍ଡବମାନଙ୍କର ବନବାସ ଜୀବନ ଆରମ୍ଭ ହେଲା । ପତ୍ର ନିର୍ମିତ ଗୋଟିଏ କୁଡ଼ିଆରେ ପାଞ୍ଚଭାଇ ଦ୍ରୌପଦୀଙ୍କ ସହିତ ଆନନ୍ଦରେ ବସବାସ କଲେ । ଯୁଧିଷ୍ଠିରଙ୍କ ମନରେ ପରମ ସନ୍ତୋଷ । ହସ୍ତିନା ନାହିଁ, ଇନ୍ଦ୍ରପ୍ରସ୍ଥ ନାହିଁ । ସେ ରାଜକୀୟ ଭୋଗ ବିଭବ ବି ନାହିଁ । ଦାସ ଦାସୀ ନାହାନ୍ତି, ଶୟନ କରିବା ନିମିତ୍ତ ସୁକୋମଳ ଶଯ୍ୟାର ଅଭାବ । ତଥାପି ଯୁଧିଷ୍ଠିର ସନ୍ତୁଷ୍ଟ । ଏହି କାରଣରୁ ଯେ ସେ ମହାମୁନି ବେଦବ୍ୟାସଙ୍କର ଭବିଷ୍ୟତବାଣୀ ଏଡ଼ାଇ ଦେଇ ପାରିଛନ୍ତି, ଭ୍ରାତୃବିବାଦର ଅବସାନପାଇଁ ସେ ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ଆନନ୍ଦରେ ପରିତ୍ୟାଗ କରିଛନ୍ତି ।

ବେଳେବେଳେ ଭାଇମାନେ ଏପରି ଜୀବନ ଧାରଣରେ ଅସନ୍ତୋଷ ପ୍ରକାଶ କରନ୍ତି, ଦୁଷ୍ଟ ଦୁର୍ଯ୍ୟୋଧନଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ପ୍ରସ୍ତାବ ଆଗତ କରନ୍ତି । ମାତ୍ର ଯୁଧିଷ୍ଠିର ମହାମେରୁପରି ତାଙ୍କ ପ୍ରତିଜ୍ଞାରେ ଅଟଳ । ସେ ପଶାଖେଳରେ ହାରି ଯାଇଛନ୍ତି—ବାରବର୍ଷ ବନବାସ ଓ ଏକ ବର୍ଷ ଅଜ୍ଞାତ ବାସପାଇଁ ପ୍ରତିଶ୍ରୁତି ବଦ୍ଧ ହୋଇଛନ୍ତି । ସେହି ପ୍ରତିଶ୍ରୁତି ପାଳନ କରିବାକୁ ହେବ, ସତ୍ୟରକ୍ଷା କରିବାକୁ ପଡ଼ିବ । ଏଥିରୁ ଟଳେ ବିଚ୍ୟୁତ ହେବା ଅଧର୍ମାଚରଣ । ଭାଇମାନଙ୍କୁ ଯୁଧିଷ୍ଠିର ଏହା ବୁଝାଇ ଦିଅନ୍ତି । ଧର୍ମପଥରେ, ସତ୍ୟପଥରେ ଚଳିବା ପାଇଁ ଉପଦେଶ ଦିଅନ୍ତି । ଜ୍ୟେଷ୍ଠ ଭ୍ରାତାଙ୍କ କଥାରେ ଭାଇମାନଙ୍କର ମନରେ ସନ୍ତୋଷ ନ ଆସିଲେ ମଧ୍ୟ ସେମାନେ ନୀରବ ରହନ୍ତି । ଭାଇଙ୍କର କଥାରୁ କେବେ ବାହାର

ହୁଅନ୍ତି ନାହିଁ । ସେମାନେ ଦୀନ ଦୁଃଖୀପରି ଜୀବନ ଅତିବାହିତ କରନ୍ତି । ଆଉ ସବୁବେଳେ ଭାବୁଥାନ୍ତି କେବେ ଏହି ଦୀର୍ଘସମୟର ଅବସାନ ଘଟିବ । ସେମାନେ ଦୋଷୀପ୍ରତି ଉପଯୁକ୍ତ ଦଣ୍ଡ ବିଧାନ କରିବେ, ଅନ୍ୟାୟର ପ୍ରତିଶୋଧ ନେବେ ।

ଦୁର୍ଯ୍ୟୋଧନ ବର୍ତ୍ତମାନ କୁରୁରାଜ୍ୟରେ ସର୍ବେସର୍ବା । ହସ୍ତିନା ଓ ଇନ୍ଦ୍ରପ୍ରସ୍ଥର ସର୍ବମୟ କର୍ତ୍ତା । ସେ ପାଣ୍ଡବମାନଙ୍କର ଦୁଃସମୟ ଅରଣ୍ୟ ଜୀବନଯାପନ କଥା ଶୁଣନ୍ତି । ଭାଇମାନଙ୍କ ପ୍ରତି ତାଙ୍କ ହୃଦୟରେ ସହାନୁଭୂତି ଆସିବା ତ ଦୂରର କଥା ବରଂ ମନେ ମନେ ଆନନ୍ଦିତ ହୁଅନ୍ତି । ସେମାନଙ୍କ ମନରେ ଆହୁରି ଅଧିକ ଦୁଃଖ ଦେବାପାଇଁ ଯୋଜନା କରନ୍ତି । ଶକୁନି ତାଙ୍କର ପ୍ରଧାନ ପରାମର୍ଶଦାତା । ସେ ଦୁର୍ଯ୍ୟୋଧନଙ୍କର ମନର କଥା ଜାଣି ଦିନେ କହିଲେ ଯଦି ଦୁର୍ଯ୍ୟୋଧନ ତାଙ୍କର ବିପୁଳ ବିଭବର ପରିଚୟ ପାଣ୍ଡବମାନଙ୍କ ଆଗରେ ଦିଅନ୍ତେ ତେବେ ସେମାନେ ଆହୁରି ଦୁଃଖ ଅନୁଭବ କରନ୍ତେ । ଏ ପ୍ରସ୍ତାବ ଦୁର୍ଯ୍ୟୋଧନଙ୍କ ମନକୁ ପାଇଲା । ସେ ଦଳବଳ ନେଇ ଦ୍ୱୈତ ବନକୁ ଯାଇ ନିଜର ବଡ଼ପଣିଆ ସେମାନଙ୍କୁ ଦେଖାଇବା ପାଇଁ ପ୍ରସ୍ତୁତ ହେଲେ । ଏହାଦ୍ୱାରା ଅମଙ୍ଗଳ ଆଶଙ୍କା କରି ଏଥିରୁ ନିବୃତ୍ତ ହେବା ପାଇଁ ଧୃତରାଷ୍ଟ୍ର ପୁଅକୁ ଉପଦେଶ ଦେଲେ । ପିତାମହ ଭୀଷ୍ମ ଦୁର୍ଯ୍ୟୋଧନଙ୍କର ବନଗମନ ବନ୍ଦ କରିବାପାଇଁ ପରାମର୍ଶ ଦେଲେ । ମାତ୍ର ଦୁର୍ଯ୍ୟୋଧନ ସେ ସବୁ କିଛି ଶୁଣିଲେ ନାହିଁ । ଏକ ବିପୁଳ ସେନାବାହିନୀ ସହିତ ଦ୍ୱୈତ ବନରେ ଉପସ୍ଥିତ ହେଲେ ।

ଯୋଗକୁ ସେଦିନ ଇନ୍ଦ୍ରଙ୍କର ସୁତ ଚିତ୍ରସେନ ତାଙ୍କର ଗନ୍ଧର୍ବବାହିନୀ ସହିତ ସେହି ବନରେ ଉପସ୍ଥିତ ଥାଆନ୍ତି । ଅର୍ଜୁନ ତାଙ୍କର ସାଇ । ଦୁର୍ଯ୍ୟୋଧନ କପଟ ଅନ୍ୟାୟରେ ପାଣ୍ଡବମାନଙ୍କୁ ବନବାସୀ କରାଇଥିଲେ ସେ ଜାଣିଥାନ୍ତି । ସେଥିପାଇଁ ତାଙ୍କ ମନରେ ରାଗ ଥାଏ । ଆଜି ସୁଯୋଗ ମିଳିଗଲା । ସେ ଦୁର୍ଯୋଧନଙ୍କର କୁଅଭିପ୍ରାୟ ଜାଣିପାରି ତାଙ୍କୁ ଉପଯୁକ୍ତ ଶାସ୍ତି ଦେବାପାଇଁ ନିଜ ସୈନ୍ୟମାନଙ୍କୁ ଆଦେଶ ଦେଲେ ।

ଆଦେଶ ପାଳିତ ହେଲା । ଗନ୍ଧର୍ବ ସୈନ୍ୟ କୁରୁସୈନ୍ୟଙ୍କୁ ଆକ୍ରମଣ କଲେ । କୌରବବାହିନୀ ଏହି ଆକ୍ରମଣରେ ସଫଳ ପ୍ରତିରୋଧ କରିପାରିଲେ ନାହିଁ, ଛିନ୍ନଛତ୍ର ହୋଇଗଲେ । ଏପରିକି କର୍ଣ୍ଣ, ଅଶ୍ୱତ୍ଥାମା ପ୍ରଭୃତି ବୀରମାନେ ଭୟରେ ଯୁଦ୍ଧକ୍ଷେତ୍ର ଛାଡ଼ି ପଳାଇଗଲେ । ଏହି ସୁଯୋଗରେ ଚିତ୍ରସେନ ଦୁର୍ଯୋଧନଙ୍କୁ ବନ୍ଦୀ କରି ସ୍ୱର୍ଗ ଅଭିମୁଖରେ ରଥ ଚଳାଇବାପାଇଁ ମାତଳିଙ୍କୁ ଆଦେଶ ଦେଲେ ।

ଯୁଧିଷ୍ଠିର ଦୁର୍ଯୋଧନଙ୍କର ଏହି ଚରମ ବିପଦ ତାଙ୍କର କତିପୟ ସୈନ୍ୟଙ୍କ ଠାରୁ ଶୁଣି ମର୍ମାହତ ହେଲେ । ଭାଇକୁ କପଟ ଏହି ବିପଦରୁ ଉଦ୍ଧାର କରିବାକୁ ହେବ

ଏ ବିଷୟରେ ସେ ଭାଇମାନଙ୍କ ସହିତ ପରାମର୍ଶ କଲେ । ଦୁର୍ଯ୍ୟୋଧନଙ୍କର ଏପରି ଅବସ୍ଥାରେ ଭୀମ, ଅର୍ଜୁନ ମହାଖୁସି । ସେମାନେ ବଡ଼ ଭାଇଙ୍କୁ ଜଣାଇଦେଲେ ଯେ ଦୋଷୀକୁ ଆମେ ଦଣ୍ଡ ଦେଇପାରିଲୁ ନାହିଁ । ଆମ କାର୍ଯ୍ୟ ଯଦି ଅନ୍ୟ ଜଣଙ୍କ ଦ୍ୱାରା ସାଧିତ ହେଲା ତେବେ ସେମାନଙ୍କର ଏ ବିଷୟରେ ମୁଣ୍ଡ ଖେଳାଇବା ଦରକାର କଣ ?

ଭାଇମାନଙ୍କଠାରୁ ଏପରି କଥା ଶୁଣି ଯୁଧିଷ୍ଠିର ଦୁଃଖିତ ହେଲେ । ସେ କହିଲେ ଯେତେହେଲେ ଦୁର୍ଯ୍ୟୋଧନ ସେମାନଙ୍କର ଭାଇ । ଭାଇ ଭାଇ ମଧ୍ୟରେ କଳହ ଥାଇପାରେ । ମାତ୍ର ଯଦି କୌଣସି ବାହାରର ଶତ୍ରୁ କୌଣସି ଭାଇ ଉପରେ ଅତ୍ୟାଚାର କରେ ତେବେ ଅନ୍ୟ ଭାଇମାନଙ୍କର ବାହାର ଶତ୍ରୁଠାରୁ ତାକୁ ଉଦ୍ଧାର କରିବା ହେଉଛି ଧର୍ମ । ଅପକାରୀ ଭାଇର ଉପକାର କରିବା ପ୍ରଥମ ଓ ପରମ କର୍ତ୍ତବ୍ୟ । ଆମ୍ଭ ଆଗରେ ଆମ ଭାଇକୁ ଅପର ଜଣେ ଧରିନେବ ଏହା ମୁଁ କଦାପି ସହିପାରୁନାହିଁ । ଏ ସଂସାର ଅନିତ୍ୟ । କେହି ଏଠାରେ ଚିରକାଳ ରହିନାହାନ୍ତି ବା ରହିବେ ନାହିଁ । ସମସ୍ତେ ଦିନେ କାଳର କବଳିତ ହେବେ ମାତ୍ର କଥା ଚିରଦିନ ରହିଯିବ । ତାପରେ ସେ ଅର୍ଜୁନଙ୍କୁ ଦୁର୍ଯ୍ୟୋଧନଙ୍କୁ ଏହି ବିପଦରୁ ରକ୍ଷା କରିବାପାଇଁ ଅନୁରୋଧ କଲେ । ଆଉ ଯଦି ସେ ଏହା ନ କରନ୍ତି ତେବେ ସେ ଦିନେ ଜୀବନ ଉତ୍ସର୍ଗ କରିଦେବେ ବୋଲି ସୂଚନା ଦେଲେ ।

ବଡ଼ ଭାଇଙ୍କର ଧର୍ମୋପଦେଶ ଭୀମ ଓ ଅର୍ଜୁନଙ୍କ ମନରେ ଅପୂର୍ବ ପରିବର୍ତ୍ତନ ଆଣିଥିଲା । ସେମାନେ ଛିନ୍ନଛିନ୍ନ ହୋଇଯାଇଥିବା କୌରବ ସୈନ୍ୟଙ୍କୁ ଏକତ୍ର କରି ଚିତ୍ରସେନଙ୍କୁ ପ୍ରତି ଆକ୍ରମଣ କରିବା ନିମିତ୍ତ ପ୍ରସ୍ତୁତ ହେଲେ । ଗନ୍ଧର୍ବ ରାଜ ଚିତ୍ରସେନ ଓ ଭୀମ ଅର୍ଜୁନଙ୍କ ମଧ୍ୟରେ ଏକ ତୁମୁଳ ସଂଘର୍ଷ ହେବାର ସୂଚନା ଦେଖାଦେଲା । କିନ୍ତୁ କୌଣସି ଯୁଦ୍ଧ ବା ସଂଘର୍ଷ ହେଲା ନାହିଁ । ପାଣ୍ଡବମାନଙ୍କ ସହିତ ଯୁଦ୍ଧ କରିବା ଚିତ୍ରସେନଙ୍କର ଉଦ୍ଦେଶ୍ୟ ନଥିଲା, କେବଳ ସେମାନଙ୍କର ଶତ୍ରୁକୁ ଉପଯୁକ୍ତ ଶିକ୍ଷା ଦେବା ଥିଲା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ । ତେଣୁ ପାଣ୍ଡବମାନେ ସୈନ୍ୟସାମନ୍ତ ଘେନି ତାଙ୍କ ଆଡ଼କୁ ଅଗ୍ରସର ହେବାର ଦେଖି ସେ ଦୁର୍ଯ୍ୟୋଧନଙ୍କୁ ବନ୍ଧନ ମୁକ୍ତ କରିଦେଲେ ।

ଦୁର୍ଯ୍ୟୋଧନ ଆସିଥିଲେ ପାଣ୍ଡବ ମାନଙ୍କୁ ନିଜର ଗର୍ବ ଦେଖାଇବା ପାଇଁ, ତାହା ତ ହୋଇ ପାରିଲା ନାହିଁ; ବରଂ ସେହିମାନଙ୍କ ଦୟାରୁ ସେ ମୁକ୍ତି ଲାଭକଲେ । ତାଙ୍କର ଗର୍ବ ଖର୍ବ ହେଲା । ଦୁଃଖରେ ଅପମାନରେ ସେ ହସ୍ତିନାପୁରକୁ ଫେରିଗଲେ ।

ଏହି ଘଟଣାରୁ ଯୁଧିଷ୍ଠିରଙ୍କର ଉଦାରତାର ପରିଚୟ ମିଳେ । ଅପକାରୀର ଉପକାର କରିବା ଯେ ଶ୍ରେଷ୍ଠ ଧର୍ମ, ଏହା ସେ ଦେଖାଇ ଯାଇଛନ୍ତି । ଆଉ ମଧ୍ୟ ଏଥିରୁ ଏହା ସ୍ପଷ୍ଟ ଯେ ଯେଉଁ ଭାଗ୍ୟହୀନ ନର ଆପଦରେ ପଡ଼ିଥାଏ ତାକୁ ସେଥିରୁ ଯେଉଁମାନେ ଉଦ୍ଧାର କରନ୍ତି ସେମାନେ ବୈକୁଣ୍ଠରେ ସ୍ଥାନ ପାଇଥାନ୍ତି । ସେହିମାନେ ହେଉଛନ୍ତି ମହାତ୍ମା ମହାପୁରୁଷ ।

କାମ୍ୟକ ବନରେ କିଛି ବର୍ଷ ଅତିବାହିତ ହେଲା । ପାଣ୍ଡବମାନେ ଆଉ ସେଠାରେ ରହିବାକୁ ଇଚ୍ଛା କଲେ ନାହିଁ । ସେମାନେ ତୀର୍ଥଯାତ୍ରା କରିବାକୁ ବାହାରିଲେ । ନାନା ତୀର୍ଥଭ୍ରମଣ କରି ସେମାନେ ଦ୍ୱୈତବନରେ ପ୍ରବେଶ କଲେ । ଦ୍ୱୈତ ବନର ସୁନ୍ଦର ପରିବେଶ ପାଣ୍ଡବ ମାନଙ୍କୁ ମୁଗ୍ଧ କଲା । ପତ୍ରକୁଟୀର ରଚନା କରି ସେଠାରେ ପାଞ୍ଚଭାଇ ଦ୍ରୌପଦୀଙ୍କ ସହିତ ଆନନ୍ଦରେ ବାସକଲେ ।

ଏହିପରି ଆନନ୍ଦରେ ବାସ କରୁଥିଲାବେଳେ ବିପଦକାଳ ସେମାନଙ୍କ ଉପରକୁ ନଇଁ ଆସିଲା । ହିରଣ୍ୟ କପଟ ଏକ ଦୁର୍ଦ୍ଦାନ୍ତ ଅସୁର । ତାର ପିତା ନିବାତ କପଟ ଅର୍ଜୁନଙ୍କ ହସ୍ତରେ ନିହତ ହୋଇଥିଲେ । ହିରଣ୍ୟ କପଟ ପିତୃହନ୍ତା ଉପରେ ପ୍ରତିଶୋଧ ନେବାକୁ ଉଦ୍ୟତ ହୁଅନ୍ତେ ତାଙ୍କର ଗୁରୁ ଶୁକ୍ରାଚାର୍ଯ୍ୟ ଏପରି ଦୁଃସାହସିକ କାର୍ଯ୍ୟରୁ ନିବୃତ୍ତ ହେବାକୁ ତାଙ୍କୁ ଉପଦେଶ ଦେଲେ । ସେ ବୁଝାଇଦେଲେ ଅର୍ଜୁନ ତାଙ୍କର ପ୍ରଧାନ ଶତ୍ରୁ ନୁହନ୍ତି ଶତ୍ରୁ ହେଉଛନ୍ତି ଇନ୍ଦ୍ର । ନିବାତ କପଟ ସ୍ୱର୍ଗ ଆକ୍ରମଣ କରିବାରୁ ଇନ୍ଦ୍ର ନିଜପୁତ୍ର ଅର୍ଜୁନଙ୍କୁ ମର୍ତ୍ତ୍ୟରୁ ଡକାଇ ଆଣି ତାଙ୍କର ହାତରେ ତାର ପିତାଙ୍କୁ ମରାଇଲା । ଏବେ ଅର୍ଜୁନ ଇନ୍ଦ୍ରଙ୍କ ପାଖରେ ଅଛନ୍ତି । ସେ ଥିବା ପର୍ଯ୍ୟନ୍ତ ଇନ୍ଦ୍ରଙ୍କୁ ଜୟ କରିବା ସହଜ ନୁହେଁ । କୌଣସି ମତେ ଅର୍ଜୁନଙ୍କୁ ଇନ୍ଦ୍ରଙ୍କ ନିକଟରୁ ଅପସାରଣ କରିବାକୁ ହେବ । ତେବେ ଇନ୍ଦ୍ର ଦୁର୍ବଳ ହୋଇପଡ଼ିବ । ସେହି ସମୟରେ ସ୍ୱର୍ଗ ଆକ୍ରମଣ କଲେ ପିତୃହତ୍ୟାର ଯଥାର୍ଥ ପ୍ରତିଶୋଧ ନେଇହେବ ।

କପଟ ଏହା ସମ୍ଭବ ହିରଣ୍ୟ ପଚାରନ୍ତେ ଶୁକ୍ର କହିଲେ ଅର୍ଜୁନଙ୍କର ଅନ୍ୟ ଚାରିଭାଇ ଦ୍ୱୈତବନରେ ଅବସ୍ଥାନ କରୁଛନ୍ତି । ଯୁଧିଷ୍ଠିର ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠ । ତାଙ୍କୁ ଯେକୌଣସି ମତେ ଅପହରଣ କରି ଆଣିବାକୁ ହେବ । ଏ ସମ୍ବାଦ ଶୁଣିଲେ ନିଶ୍ଚିତଭାବରେ ବଡ଼ ଭାଇଙ୍କର ଉଦ୍ଧାର ପାଇଁ ଅର୍ଜୁନ ସ୍ୱର୍ଗ ଛାଡ଼ି ଚାଲି ଆସିବ । ସେହି ସୁଯୋଗରେ ସ୍ୱର୍ଗପୁରୀ ଆକ୍ରମଣ କଲେ, ଇନ୍ଦ୍ର ପରାସ୍ତ ଓ ନିହତ ହେବେ । ଏହିପରି ପିତୃହତ୍ୟାର ପ୍ରତିଶୋଧ ନିଆଯାଇ ପାରିବ ।

ଶୁକ୍ରାଚାର୍ଯ୍ୟଙ୍କର ଏହି ପରାମର୍ଶ ହିରଣ୍ୟ ମନକୁ ପାଇଲା । ସେ ଏକ ନୈଷ୍ଠିକ ଯୋଗୀ ବେଶରେ ଯୁଧିଷ୍ଠିରଙ୍କ ନିକଟରେ ପ୍ରବେଶ ହେଲେ । ସେତେବେଳେ ଦ୍ରୌପଦୀ ନିକଟସ୍ଥ ନଦୀକୁ ଗାଧୋଇ ଯାଇଥାନ୍ତି । ଅନ୍ୟ ତିନି ଭାଇ ଯୁଧିଷ୍ଠିରଙ୍କ ନିକଟରେ ଥାଆନ୍ତି । ଭଣ୍ଡ ତପସ୍ୱୀ ସେମାନଙ୍କୁ କୌଶଳରେ ଅନ୍ୟତ୍ର ପଠାଇ ଦେଇ ଯୁଧିଷ୍ଠିରଙ୍କୁ ଅପହରଣ କରି ନେଇ ଆସିଲା । ଦ୍ରୌପଦୀ ଓ ଅନ୍ୟ ତିନି ଭାଇ ଫେରି ଆସି ଦେଖନ୍ତି, ଯୁଧିଷ୍ଠିର ନାହାନ୍ତି । ଘଟଣା କଣ ଜାଣିବା ପାଇଁ ସମସ୍ତେ ସହଦେବଙ୍କ ଆଡ଼କୁ ଚାହିଁ ରହିଲେ । ସହଦେବ ତ ଭୂତ ଭବିଷ୍ୟତ କଥା ଜାଣିପାରନ୍ତି । ସେ କିଛି କ୍ଷଣ ଚିନ୍ତା କରି କହିଲେ, ହିରଣ୍ୟ କପଟ ଯୁଧିଷ୍ଠିରଙ୍କୁ ଅପହରଣ କରିନେଇ ବନ୍ଦୀଖାନାରେ ରଖିଛି ।

କପଟ ତାଙ୍କୁ ଉଦ୍ଧାର କରିବାକୁ ହେବ ଭାବିଲେଣି ପଡ଼ିଲା । ଅର୍ଜୁନ କହୁଥାନ୍ତି, ଶ୍ରୀକୃଷ୍ଣ ଦ୍ୱାରକାରେ । ଏ ବିପଦରୁ କପଟ ରକ୍ଷା ପାଇବାକୁ ହେବ ! ଦ୍ରୌପଦୀ କହିଲେ, ଯେକୌଣସି ପ୍ରକାରେ ଶ୍ରୀକୃଷ୍ଣଙ୍କୁ ଡକାଇ ଆଣିବାକୁ ପଡ଼ିବ । ସେ ଆସିଲେ ନିଶ୍ଚିତ ଭାବରେ ଏହି ସଙ୍କଟରୁ ରକ୍ଷା ପାଇବାର ଉପାୟ ବତାଇ ଦେବେ ।

ଦ୍ୱାରକା କେଣେ ପାଖ ଯେ ଶ୍ରୀକୃଷ୍ଣଙ୍କୁ ଡକାଇ ଆଣିବେ ! କଥା ହେଲା ସମସ୍ତେ ଏକାଗ୍ରରେ ତାଙ୍କୁ ସ୍ମରଣ କରିବେ, ତାହାହେଲେ କୃଷ୍ଣ ଯେଉଁଠି ଥାନ୍ତୁ ନା କାହିଁକି ନିଶ୍ଚୟ ଉପସ୍ଥିତ ହେବେ । ତାହାହିଁ ହେଲା । ସେମାନଙ୍କର ଅକୁଳ ପ୍ରାର୍ଥନାରେ ଶ୍ରୀକୃଷ୍ଣଙ୍କର ଆସ୍ଥାନ କମ୍ପିଲା । ସେ ଗରୁଡ଼ ପୃଷ୍ଠରେ ଆସି ତତ୍‌କ୍ଷଣାତ ସେଠାରେ ଉପସ୍ଥିତ ହେଲେ ।

ଭାଇମାନେ ଯାହାତାହା ଘଟିଥିଲା, ସବୁ ଗୋଟି ଗୋଟି କରି କହିଗଲେ । କୃଷ୍ଣ ଏଥିରେ ପ୍ରତ୍ୟୁତ୍ତର ଦେବା ପୂର୍ବରୁ ଗରୁଡ଼ କହିଲା, ମୋତେ ଯଦି ଅନୁମତି ମିଳିବ ତେବେ ମୁଁ ରାକ୍ଷସ ପୁରୀରୁ ଯୁଧିଷ୍ଠିରଙ୍କୁ ଉଦ୍ଧାର କରି ଆଣିବି ।

ଏ ପ୍ରସ୍ତାବରେ ଖୁସିହୋଇ ଶ୍ରୀକୃଷ୍ଣ ଗରୁଡ଼ଙ୍କୁ ଅନୁମତି ଦେଲେ । ଗରୁଡ଼ ନାନା କୌଶଳରେ ଖାଲି ଯେ ଯୁଧିଷ୍ଠିରଙ୍କୁ ଉଦ୍ଧାର କରି ଆଣିଲା ତା ନୁହେଁ ହିରଣ୍ୟ ରାକ୍ଷସର ସୁବର୍ଣ୍ଣପୁରୀକୁ ଧ୍ୱସ୍ତ ବିଧ୍ୱସ୍ତ କରିଦେଲା । ତାପରେ ଅର୍ଜୁନ ଯୁଦ୍ଧରେ ହିରଣ୍ୟ କପଟଙ୍କୁ ପରାସ୍ତ ଓ ନିହତ କଲେ ।

ଏହିପରି ଯୁଧିଷ୍ଠିର ଧର୍ମବଳରେ ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା ପାଇଥିଲେ ।

ବାରବର୍ଷ ବନବାସ ପ୍ରାୟ ଶେଷହେବା ପୂର୍ବରୁ ପାଣ୍ଡବମାନେ କପଟ ଅନ୍ୟ ଏକ ଗୁରୁତର ବିପଦର ସମ୍ମୁଖୀନ ହୋଇଥିଲେ ଏବଂ ଯୁଧିଷ୍ଠିରଙ୍କର ଧର୍ମବଳରୁ ସେମାନେ ଏଥିରୁ କପଟ ରକ୍ଷା ପାଇଥିଲେ ସେ ବିଷୟରେ ଏକ କୌତୂହଳପୂର୍ଣ୍ଣ କାହାଣୀ ଶୁଣାଯାଏ ।

ଥରେ ତୀର୍ଥଯାତ୍ରା ସମୟରେ ପାଣ୍ଡବମାନେ ଆସି ଏକ ଗହନ ବନରେ ଉପସ୍ଥିତ ହେଲେ । ବନ ପଥରେ ଯାଉଯାଉ ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ । ମାତ୍ର ପଥର ଶେଷ ନାହିଁ । କ୍ଳାନ୍ତ ଶ୍ରାନ୍ତ ହୋଇ ସେମାନେ ଗୋଟିଏ ବଟବୃକ୍ଷ ଛାୟାରେ ବସିଥାନ୍ତି । ପଥଶ୍ରମ ହେତୁ ସେମାନଙ୍କୁ ଖୁବ ଶୋଷ କରୁଥାଏ । ପାଣି କାହିଁ ? କ୍ରମେ ଶୋଷରେ ସେମାନଙ୍କର କଣ୍ଠ ତାଳୁ ଶୁଖି ଆସିଲା । ଯୁଧିଷ୍ଠିର ନକୁଳଙ୍କୁ କୌଣସି ଏକ ଉଚ୍ଚ ବୃକ୍ଷରେ ଚଢ଼ି ଜଳର ସନ୍ଧାନ ନେବାକୁ ଅନୁରୋଧ କଲେ । ନକୁଳ ଗଛ ଉପରେ ଚଢ଼ି ଦେଖିଲେ ଖୁବ ଦୂରରେ ଏକ ଜଳ ପୂର୍ଣ୍ଣ ପୁଷ୍କରିଣୀ ଅଛି ।

ଯୁଧିଷ୍ଠିର ଜଳ ଆଣିବା ପାଇଁ ନକୁଳଙ୍କୁ ପଠାଇଲେ । ନକୁଳ ଯାଇ ଦେଖିଲେ, ପ୍ରକୃତରେ ଏହା ଏକ ଜଳପୂର୍ଣ୍ଣ ବିସ୍ତୀର୍ଣ୍ଣ ପୁଷ୍କରିଣୀ । କି ସୁନ୍ଦର ସେ ପାଣି ! କାଚକେନ୍ଦୁପରି

ଦେଖାଯାଉଛି । ତାଙ୍କୁ ତ ଖୁବ ଶୋଷ ଲାଗୁଥାଏ । ସେ ପୋଖରୀ ଭିତରେ ପଶି ଜଳପାନ କରିବାକୁ ଉଦ୍ୟତ ହେଉଛନ୍ତି ଏହି ସମୟରେ ଶୁଣାଗଲା—

ତରତର ହୁଅନାହିଁ । ଏହି ପୋଖରୀ ମୋର । ପ୍ରଥମେ ମୋର ପ୍ରଶ୍ନର ଉତ୍ତର ଦିଅ, ତାପରେ ଜଳ ପାନ କରିବ ।

ନକୁଳ ଆଶ୍ଚର୍ଯ୍ୟ ହୋଇଗଲେ । ଏହି ଜନମାନବଶୂନ୍ୟ ଗହନ ବନରେ ଏପୁଣି କାହାର ଶବ୍ଦ । ତାଙ୍କର ତ ଶୋଷରେ ଦେହ ଅବଶ ହୋଇ ଆସୁଥାଏ । ସେ ଏହି ଚେତାବନୀ ପ୍ରତି କର୍ଣ୍ଣପାତ ନ କରି ଜଳପାନ କଲେ । କି ଆଶ୍ଚର୍ଯ୍ୟ । ହଠାତ୍ ତାଙ୍କର ଦେହ ଅବଶ ହୋଇ ଆସିଲା । ସେ ପୋଖରୀକୂଳରେ ପଡ଼ିଗଲେ, ଚେତା ଚୈତନ୍ୟ ନାହିଁ ।

ନକୁଳ ଫେରିବାର ଡେରି ହେବାର ଦେଖି ଯୁଧିଷ୍ଠିର ସହଦେବଙ୍କୁ ପଠାଇଲେ । ସେ ପୋଖରୀକୂଳରେ ପହଞ୍ଚି ଦେଖିଲେ ସହଦେବ ମୃତପ୍ରାୟ ପଡ଼ିଛନ୍ତି । ସେ ଭାବିଲେ, ଆଗ ଜଳ ପାନ କରି ତୃଷା ନିବାରଣ କରିବି, ତାପରେ ଭାଇଙ୍କର କଣ ହୋଇଛି, ଦେଖିବି । ଏହା ଭାବି ସେ ଜଳ ପାନ କରିବା ପାଇଁ ଉଦ୍ୟତ ହେଉଛନ୍ତି ସେହି ଅଶରୀର ସ୍ୱର, ସେହି ଚେତାବନୀ । ମୋ ପ୍ରଶ୍ନର ଉତ୍ତର ନଦେଇ ଜଳ ପାନ କଲେ ଭାଇଙ୍କର ଅବସ୍ଥା ପ୍ରାପ୍ତ ହେବ । ସହଦେବ ଏପରି ତୃଷାର୍ତ୍ତ ହୋଇଥିଲେ ଯେ ସେ ଏଥି ପ୍ରତି କର୍ଣ୍ଣପାତ ନ କରି ଜଳପାନ କରୁକରୁ ଭାଇଙ୍କ ପରି ପୋଖରୀକୂଳରେ ଅଚେତନ ହୋଇ ପଡ଼ିରହିଲେ ।

ସହଦେବଙ୍କର ଡେରି ହେବାର ଦେଖି ଭୀମ ଏବଂ ପରେ ଅର୍ଜୁନ ଭାଇଦ୍ୱୟଙ୍କୁ ଖୋଜିବାକୁ ଗଲେ ଏବଂ ଶୂନ୍ୟରେ ଭାସି ଆସୁଥିବା ଚେତାବନୀ ପ୍ରତି ଭ୍ରୁକ୍ଷେପ ନକରି ଜଳ ପାନ କଲେ । ଜଳପାନ କରିବା ପରେ ପରେ ସେମାନେ ମଧ୍ୟ ସେହିଠାରେ ଚେତାନାଶୂନ୍ୟ ଅବସ୍ଥାରେ ପଡ଼ି ରହିଲେ ।

ଯୁଧିଷ୍ଠିର ଖୁବ ବ୍ୟସ୍ତ ହୋଇପଡ଼ିଲେ । ଭାବିଲେ ନିଶ୍ଚିତ ଭାବରେ ଭାଇମାନେ କୌଣସି ଗୁରୁତର ବିପଦର ସମ୍ମୁଖୀନ ହୋଇଛନ୍ତି । ଆଉ କାଳ ବିଳମ୍ବ ନକରି ସେ ଭାଇମାନଙ୍କୁ ଖୋଜିବା ଉଦ୍ଦେଶ୍ୟରେ ବାହାରି ଉକ୍ତ ପୋଖରୀକୂଳରେ ଉପସ୍ଥିତ ହେଲେ ।

ସେଠାରେ ଭାଇମାନଙ୍କର ଏହି ଶୋଚନୀୟ ଅବସ୍ଥାଦେଖି ସେ ବିଚଳିତ ହୋଇ-ପଡ଼ିଲେ । ନିଜକୁ କେତେ ନିନ୍ଦା କଲେ । ତାଙ୍କରି ଯୋଗୁଁ ତାଙ୍କର ପ୍ରିୟ ଭାଇମାନଙ୍କର ମୃତ୍ୟୁ ହେଲା ଭାବି ନିଜକୁ ଧିକ୍କାର କଲେ । ତାପରେ ସେ ଭାବିଲେ, ଏ କଣ ! ପୃଥିବୀରେ ଏପରି ବୀର ନାହାନ୍ତି ଯେଉଁମାନେ କି ମୋ ଭାଇମାନଙ୍କୁ ଯୁଦ୍ଧରେ ପରାସ୍ତ କରି ଦେଇପାରିବେ । ତାହାଛଡ଼ା ସେମାନଙ୍କ ଶରୀରରେ କୌଣସି କ୍ଷତ ଚିହ୍ନ ନାହିଁ । ଆଉମଧ୍ୟ କୌଣସି ଶତ୍ରୁର ପଦଚିହ୍ନ ଦେଖାଯାଉ ନାହିଁ । ସେ ଭାଇମାନଙ୍କ ମୁହଁକୁ ଚାହିଁ ଦେଖିଲେ ତାହା ପ୍ରଫୁଲ୍ଲ ଦେଖାଯାଉଛି । ଯେପରି ଶାନ୍ତିରେ ସେମାନେ ଶୋଇଛନ୍ତି ।

ଏହିପରି କେତେ କଥା ତାଙ୍କ ମାନସପଟରେ ଖେଳିଗଲା । ସେତେବେଳକୁ ସେ ତୃଷାରେ ଅସ୍ଥିର ହୋଇ ପଡ଼ିଥାନ୍ତି । ଜଳପାନ କରିବାକୁ ସେ ଜଳମଧ୍ୟକୁ ଅବତରଣ କରୁ ନ କରୁଣୁ ଶୁଣାଗଲା ସେହି ଚେତାବନୀ—ଏ ପୋଖରୀ ମୋର, ମୋ ପ୍ରଶ୍ନର ଉତ୍ତର ନଦେଇ ଜଳ ପାନ କଲେ ତୁମକୁ ମଧ୍ୟ ଭାଇମାନଙ୍କ ପରି ଜୀବନ ହରାଇବାକୁ ପଡ଼ିବ ।

ଏହା ଶୁଣି ଯୁଧିଷ୍ଠିର ଚକିତ ହେଲେ ଏବଂ ଭାଇମାନଙ୍କର ପ୍ରାଣନାଶର କାରଣ ଅନୁଶନ୍ଧାନ କରିବାରେ ଜାଣିପାରିଲେ । ଏହି ପରିସ୍ଥିତିରୁ ନିଜକୁ ରକ୍ଷାକରିବା ପାଇଁ ମନସ୍ଥ କରି ସେ କହିଲେ 'ଅନୁଗ୍ରହ କରି ତୁମେ ପ୍ରଶ୍ନ କର କୁହ ।'

ତାପରେ ଛୁଟିଲା ପ୍ରଶ୍ନର ଲହରୀ । ଯୁଧିଷ୍ଠିର ସେଗୁଡ଼ିକର ଯଥାର୍ଥ ଉତ୍ତର ଦେଇଚାଲିଥାନ୍ତି । ଶେଷରେ ଆସିଲା କେତୋଟି ଜଟିଳ ପ୍ରଶ୍ନ ।

ଏ ପୃଥିବୀରେ ସବୁଠାରୁ ଆଶ୍ଚର୍ଯ୍ୟ କଣ ? ଉତ୍ତର ଆସିଲା ପ୍ରତ୍ୟେକ ଦିନ ଶତ ଶତ ଲୋକ ମୃତ୍ୟୁମୁଖରେ ପଡ଼ୁଛନ୍ତି । ତଥାପି ଯେଉଁମାନେ ଜୀବନରେ ଅଛନ୍ତି ସେମାନଙ୍କର ବିଶ୍ୱାସ, ସେମାନେ ଚିରଦିନ ବଞ୍ଚିରହିବେ, ଏହାହିଁ ସବୁଠାରୁ ବଡ଼ ଆଶ୍ଚର୍ଯ୍ୟ ।

“କେଉଁ କଥା ତ୍ୟାଗ କଲେ ମନୁଷ୍ୟ ସର୍ବଜନ ପ୍ରିୟ ହୁଏ ?

'ଗର୍ବ' ।

“କେଉଁ ଜିନିଷ ନଷ୍ଟହେଲେ ଦୁଃଖ ପରିବର୍ତ୍ତରେ ଆନନ୍ଦ ଆସେ ?

'କ୍ରୋଧ'- ଏହା ପରିତ୍ୟାଗ କଲେ ମନୁଷ୍ୟ ଦୁଃଖର ସମ୍ମୁଖୀନ ତ ହୁଏ ନାହିଁ ବରଂ ସମସ୍ତେ ତାଙ୍କୁ ଶ୍ରଦ୍ଧା କରନ୍ତି ।”

“ମୃତ୍ୟୁ ପରେ କେଉଁ ଜିନିଷ ସଙ୍ଗରେ ଯାଏ” ?

“ଧର୍ମ- ଏହାହିଁ କେବଳ ମୃତ୍ୟୁପରେ ଆତ୍ମାର ନିଃସଙ୍ଗ ଯାତ୍ରାରେ ଏକମାତ୍ର ସାଥୀ” ।

ଏହିପରି ସମସ୍ତ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଯୁଧିଷ୍ଠିର ଦେଇଥିଲେ । ପ୍ରଶ୍ନକର୍ତ୍ତା ହେଉଛନ୍ତି ଜଣେ ଯକ୍ଷ । ସେ ଯୁଧିଷ୍ଠିରଙ୍କୁ କହିଲେ-ତୁମର ଉତ୍ତରରେ ମୁଁ ମୁଗ୍ଧ । ସେଥିପାଇଁ ତୁମ ଭାଇମାନଙ୍କ ମଧ୍ୟରୁ ଜଣଙ୍କୁ ବଞ୍ଚାଇ ଦେବାକୁ ମୁଁ ପ୍ରସ୍ତୁତ । କାହାକୁ ବଞ୍ଚାଇବ ?”

କିଛି ସମୟ ଚିନ୍ତାକରି ଯୁଧିଷ୍ଠିର କହିଲେ, “ମହାତ୍ମନ, ଯଦି ତୁମର ଏତେ ଦୟା ତେବେ ନକୁଳକୁ ବଞ୍ଚାଇ ଦିଅନ୍ତୁ ।”

'କଣ ତୁମେ ପାଗଳ ନା କ'ଣ ! ଯକ୍ଷ ମନ୍ତବ୍ୟ ଦେଲେ । ଭୀମ, ଅର୍ଜ୍ଜୁନ ତୁମର ପ୍ରାଣରକ୍ଷାକାରୀ ଓ ନିଜଭାଇ । ସେମାନଙ୍କ ଜୀବନ ଭିକ୍ଷା ନ କରି ନକୁଳଙ୍କର ଜୀବନଭିକ୍ଷାର ରହସ୍ୟ କଣ ବୁଝିପାରୁନାହିଁ ।

ଯୁଧିଷ୍ଠିର ହସିହସି ଉତ୍ତର ଦେଲେ, 'ଧର୍ମ' କେବଳ ମନୁଷ୍ୟକୁ ରକ୍ଷା କରେ ଆଉ କେହି ନୁହେଁ, ଭୀମ ବା ଅର୍ଜୁନ ନୁହନ୍ତି । ଯେଉଁ ଲୋକ ଧର୍ମକୁ ଉପେକ୍ଷା କରେ ତାର ଧ୍ୱଂସ ଅନିବାର୍ଯ୍ୟ । କୁନ୍ତୀ ଓ ମାଦ୍ରୀ ମୋର ବାପାଙ୍କର ଦୁଇଟି ସ୍ତ୍ରୀ । କୁନ୍ତୀଙ୍କ ପୁତ୍ରମାନଙ୍କ ମଧ୍ୟରୁ ମୁଁ ଜୀବିତ । ମାଦ୍ରୀଙ୍କ ପୁତ୍ରଦ୍ୱୟଙ୍କ ମଧ୍ୟରୁ ଜଣେ ରହିବାର କଥା । ତାହାହେଲେ ଧର୍ମ ନିକଟ ସମତୁଲ ରହିବ । କୌଣସି ମାତା ପୁତ୍ରହରା ହେବେ ନାହିଁ ।

ଯୁଧିଷ୍ଠିରଙ୍କର ନିରପେକ୍ଷତାରେ ଯକ୍ଷ ସାତିଶୟ ସନ୍ତୁଷ୍ଟ ହୋଇ ଯୁଧିଷ୍ଠିରଙ୍କର ଚାରି ଭାଇଙ୍କୁ ଜୀବନ ଦାନ କରିଥିଲେ । ତାପରେ ସେ ନିଜର ପରିଚୟ ପ୍ରଦାନ କରି କହିଲେ ମୁଁ ହେଉଛି ସ୍ୱୟଂ ଧର୍ମ ଦେବତା, ତୁମକୁ ପରୀକ୍ଷା କରିବା ପାଇଁ ଆସିଥିଲି । ସେ ପରୀକ୍ଷାରେ ତୁମେ ଉତ୍ତୀର୍ଣ୍ଣ ହୋଇଛ । ମୋର ଆଶୀର୍ବାଦରୁ ତୁମେ ଅଜ୍ଞାତବାସ ବର୍ଷଟି ସୁରୁଖୁରୁରେ କଟାଇବ-ଏହା କହି ସେ ଅନ୍ତର୍ହିତ ହୋଇଗଲେ ।

ଏହା ଏକ କପୋଳକଳ୍ପିତ ଗଳ୍ପ ହୋଇପାରେ; ମାତ୍ର ଏଥିରୁ ମନୁଷ୍ୟର ଏ ସଂସାରରେ ଚଳଣୀ ବିଷୟରେ ସ୍ପଷ୍ଟ ସୂଚନା ଦିଆଯାଉଛି । ଗର୍ବ, ଅହଙ୍କାର, କ୍ରୋଧ ପରିତ୍ୟାଗ କରି ମନୁଷ୍ୟ ନିରପେକ୍ଷ ଭାବରେ ଜୀବନ ଯାପନ କଲେ ଏବଂ ସମସ୍ତ ବିପଦ ଆପଦରେ ଧୈର୍ଯ୍ୟର ସହିତ ସମ୍ମୁଖୀନ ହେଲେ, ମନୁଷ୍ୟ ଶେଷରେ ପ୍ରତ୍ୟେକ କାର୍ଯ୍ୟରେ ଜୟଯୁକ୍ତ ହୁଏ ।

ପାଣ୍ଡବମାନଙ୍କର ବନବାସ ଶେଷ ହେଲା । ବର୍ତ୍ତମାନ ଏକ ବର୍ଷ ଅଜ୍ଞାତବାସ କରିବାର କଥା । ଭାଇମାନେ ବସି ସ୍ଥିର କଲେ ସେମାନେ ମତ୍ସ୍ୟଦେଶରେ ଆତ୍ମଗୋପନ କରିବେ ଏବଂ ସେଠାର ରାଜା ବିରାଟଙ୍କର ଘରେଇ ସେବାକାରୀ ରୂପେ ତ୍ରୟୋଦଶ ବର୍ଷଟି କଟାଇ ଦେବେ ।

## ଅଜ୍ଞାତବାସ

ବନବାସ ଦ୍ୱାଦଶ ବର୍ଷର ଶେଷ ଦିବସରେ ଯୁଧିଷ୍ଠିର ଅତି ବିନୟର ସହିତ ସଙ୍ଗରେ ଥିବା ବ୍ରାହ୍ମଣମାନଙ୍କୁ ସମ୍ବୋଧନ କରି କହିଲେ, ହେ ପୂଜ୍ୟ ବ୍ରାହ୍ମଣମାନେ ! ବର୍ତ୍ତମାନ ଆମର ବନବାସ ସମୟ ଅତିକ୍ରାନ୍ତ ହୋଇଛି । ଏହାପରେ ଆରମ୍ଭହେବ ଅଜ୍ଞାତବାସ । ଏହି ସମୟରେ ଆମ୍ଭମାନଙ୍କୁ ବଡ଼ ସାବଧାନରେ କାଳାତିପାତ କରିବାକୁ ହେବ । ଅଜ୍ଞାତବାସ ସମୟରେ ଦୁର୍ଯ୍ୟୋଧନଙ୍କର ଗୁପ୍ତଚରମାନେ ଯଦି ଆମ୍ଭମାନଙ୍କର ସନ୍ଧାନ ପାଆନ୍ତି ତେବେ ପୁଣି ତ୍ରୟୋଦଶ ବର୍ଷ ବନବାସ । ଏହା କେତେ ଦୁଃଖଦାୟକ ଆପଣମାନେ ଅନୁଭବ କରିପାରୁଥିବେ । ଆଶୀର୍ବାଦ କରନ୍ତୁ ଯେପରି ଏହି ବିପଦରୁ ଆମ୍ଭେମାନେ ଉଦ୍ଧାର ପାଉଁ । ପୁଣି କେବେ ସେ ଆପଣମାନଙ୍କର ସାହାଯ୍ୟ ଲାଭ କରିବୁ ତାହା ସେହି ପରମ

କାରୁଣିକ ଈଶ୍ୱରଙ୍କ ଦୟା ଉପରେ ନିର୍ଭର କରେ । ଯୁଧିଷ୍ଠିରଙ୍କର ଆଖି ଛଳ ଛଳ ହୋଇ ଆସିଲା ।

ପୁରୋହିତ ଧୌମ୍ୟ ପାଣ୍ଡବମାନଙ୍କୁ ଆଶୀର୍ବାଦ କଲେ ଏବଂ ସେମାନେ ସଫଳତାର ସହିତ ଯେପରି ଅଜ୍ଞାତବାସ ସମୟଟି କଟାନ୍ତି ସେଥିପାଇଁ ଭଗବାନଙ୍କ ନିକଟରେ ଆନ୍ତରିକ ପ୍ରାର୍ଥନା ଜଣାଇଲେ । ଅନ୍ୟ ବ୍ରାହ୍ମଣମାନେ ମଧ୍ୟ ଅନୁରୂପ ଆଶୀର୍ବାଦ କଲେ ।

ତତ୍ପରେ ପାଣ୍ଡବମାନେ ବ୍ରାହ୍ମଣମାନଙ୍କଠାରୁ ବିଦାୟ ନେଇ ଅଜ୍ଞାତବାସ ଉଦ୍ଦେଶ୍ୟରେ ଚାଲିଲେ । ବିଚ୍ଛେଦ ବଡ଼ କଷ୍ଟଦାୟକ । ମିଳନ ଓ ବିଚ୍ଛେଦ ଜଗତର ରୀତି । ଯେଉଁମାନେ ଜ୍ଞାନୀ ପଣ୍ଡିତ ସେମାନେ ମିଳନରେ ଉଲ୍ଲସିତ ବା ବିଚ୍ଛେଦରେ ଅଧୈର୍ଯ୍ୟ ହୁଅନ୍ତି ନାହିଁ ।

ପୂର୍ବ ସଂକଳ୍ପ ଅନୁସାରେ ପାଣ୍ଡବମାନେ ଛଦ୍ମବେଶ ଧାରଣ କରି ମତ୍ସ୍ୟଦେଶର ଅଧିପତି ବିରାଟଙ୍କ ପ୍ରାସାଦରେ ଉପସ୍ଥିତ ହୋଇ ସେବାକାରୀ ରୂପେ ସେମାନଙ୍କୁ ଗ୍ରହଣ କରିବା ପାଇଁ ଅନୁରୋଧ ଜଣାଇଲେ । ବିରାଟ ଅଗ୍ନିକୁ ଯେତେ ଲୁଚାଇଲେ ମଧ୍ୟ ତାହା ଯେପରି ପ୍ରକାଶିତ ହୁଏ ଏବଂ ଚତୁର୍ଦ୍ଦିଗ ଆଲୋକିତ କରିଦଏ ସେହିପରି ପାଣ୍ଡବ ପାଞ୍ଚଭାଇ ଓ ଦ୍ରୌପଦୀ ନିଜ ନିଜର ବେଶ ବଦଳାଇ ଥିଲେ ମଧ୍ୟ ସେମାନଙ୍କର ବ୍ୟକ୍ତିତ୍ୱ ଫୁଟି ବାହାରୁଥିଲା । ବିରାଟ ଦେଖିଲେ ଏହି ଯେଉଁମାନେ ତାଙ୍କ ପ୍ରାସାଦରେ ସେବାକାରୀରୂପେ ରହିବା ପାଇଁ ଅନୁରୋଧ କରୁଛନ୍ତି, ସେମାନେ ଶାସନକାରୀ ରୂପେ ଜନ୍ମଗ୍ରହଣ କରିଛନ୍ତି, ସେବାକାରୀ ହେବାପାଇଁ ନୁହେଁ । ତେଣୁ ସେ କି ଉତ୍ତର ଦେବେ ପ୍ରଥମେ ସ୍ଥିର କରି ପାରିଲେ ନାହିଁ । ଯେତେବେଳେ ପାଣ୍ଡବମାନେ ତାଙ୍କୁ ବାରମ୍ବାର ଅନୁରୋଧ କଲେ, ସେ ଆଉ ସମ୍ଭାଳି ପାରିଲେ ନାହିଁ । ପ୍ରାସାଦରେ ସେବାକାରୀ ରୂପେ ରହିବା ପାଇଁ ଅନୁମତି ଦେଲେ । ଫଳରେ ଯୁଧିଷ୍ଠିର କଙ୍କ ନାମରେ ରାଜାଙ୍କର ବ୍ୟକ୍ତିଗତ ସଙ୍ଗୀରୂପେ ରାଜ ଦରବାରରେ ରହି ତାଙ୍କ ସହିତ ପଶାଖେଳରେ ସମୟ କଟାଇଲେ । ଭୀମ ହେଲେ ପ୍ରାସାଦର ମୁଖ୍ୟ ପାଚକ । ଅର୍ଜୁନ ବୃହନ୍ନଳା ନାମରେ ରାଜକୁମାରୀ ଉତ୍ତରାଙ୍କୁ ନୃତ୍ୟ ଗୀତ ଶିଖାଇବା ପାଇଁ ନିଯୁକ୍ତ ପାଇଲେ । ଦ୍ରୌପଦୀ ରାଣୀ ସୁଦେଷ୍ଣାଙ୍କର ବ୍ୟକ୍ତିଗତ ସେବାରେ ସମୟ କଟାଇଲେ । ଆଉ ନକୁଳ ରାଜାଙ୍କର ଅଶ୍ୱମାନଙ୍କର ଓ ସହଦେବ ଗାଈ ଗୋରୁ ମାନଙ୍କର ହେପାଜତ କରିବା ପାଇଁ ନିଯୁକ୍ତି ପାଇଲେ ।

ବିରାଟଙ୍କ ଦରବାରରେ ଥିବାବେଳେ ଏକ ଅପ୍ରୀତିକର ଘଟଣା ଘଟିଲା । ସେତେ-ବେଳକୁ ଅଜ୍ଞାତବାସ ଶେଷ ହୋଇ ଆସୁଥାଏ । କୀଚକ ରାଣୀ ସୁଦେଷ୍ଣାଙ୍କର ଭାଇ । କୀଚକ ମହାବୀର ଓ ବିରାଟ ସେନାବାହିନୀର ଅଧିନାୟକ । ବିରାଟଙ୍କର ଯେତେସବୁ ପ୍ରତିପତ୍ତି

କେବଳ କୀଚକଙ୍କ ଯୋଗୁଁ । ସେଥିପାଇଁ ଲୋକେ କହୁଥାନ୍ତି, କୀଚକ ବାହୁବଳେ ବିରାଟ ରାଜା ।

ଏହି କୀଚକ ଦ୍ରୌପଦୀଙ୍କ ରୂପ ଲାବଣ୍ୟରେ ମୁଗ୍ଧ ହୋଇ ତାଙ୍କୁ ନିଜର ରାଣୀ କରିବା ପାଇଁ ଇଚ୍ଛା ପ୍ରକାଶ କଲେ । ଏହି ପ୍ରସ୍ତାବରେ ଦ୍ରୌପଦୀ ରାଜି ନ ହେବାରୁ ତାଙ୍କ ପ୍ରତି ଅସୌଜନ୍ୟ ବ୍ୟବହାର ଦେଖାଇବା ପାଇଁ ମଧ୍ୟ ସେ ପଶ୍ଚାତ୍ପଦ ହେଲେ ନାହିଁ ।

ଭୀମ ଏହା ଜାଣିଲେ । ସେ ଯୁଧିଷ୍ଠିରଙ୍କର ଅନୁମତି ନେଇ ଗୁପ୍ତରେ କୀଚକଙ୍କୁ ବଧ କଲେ । ଏଣେ ଦୁର୍ଯ୍ୟୋଧନ ମହାବ୍ୟସ୍ତ । ଯେତେ ଯେଉଁଆଡ଼େ ପାଣ୍ଡବମାନଙ୍କର ସନ୍ଧାନ ନେବା ଯୋଗୁଁ ଚର ପଠାଇଥିଲେ ସମସ୍ତେ ଫେରିଆସି ସେମାନଙ୍କର ବିଫଳତାର କାହାଣୀ ଶୁଣାଇଲେ । କେବଳ ଯେଉଁ ଚର ମତ୍ସ୍ୟଦେଶକୁ ଯାଇଥିଲା ସେ ଖବର ଦେଲା ଯେ କେହି ଜଣେ ଅଜ୍ଞାତ ପୁରୁଷ ଜଣେ ସ୍ତ୍ରୀଲୋକ ପାଇଁ ମହାବଳୀ କୀଚକଙ୍କୁ ହତ୍ୟା କରିଛି, ଏହି ସମ୍ବାଦରେ ଦୁର୍ଯ୍ୟୋଧନ ଉଲ୍ଲସିତ ହେଲେ ଏବଂ ମନେ ମନେ ଅନୁମାନ କରି ନେଲେ, ଦ୍ରୌପଦୀଙ୍କ ପାଇଁ ଏହା ଭୀମର କାମ ହୋଇପାରେ । କାରଣ କୀଚକଙ୍କୁ ହତ୍ୟା କରିବା ପାଇଁ ଆଉ ସେତେବେଳେ ପ୍ରାଣୀ ନ ଥିଲେ ।

ହସ୍ତିନା ପୁରରେ ଶକୁନି, କର୍ଣ୍ଣ, ଅଶ୍ୱତ୍ଥାମା ଓ ଦୁର୍ଯ୍ୟୋଧନଙ୍କ ମଧ୍ୟରେ ଘନଘୋଟ ଆଲୋଚନା ଚାଲି ସ୍ଥିର ହେଲା ବିଶାଳ କୌରବ ବାହିନୀ ବିରାଟଙ୍କ ରାଜ୍ୟ ଆକ୍ରମଣ କରି ତାଙ୍କର ମନ୍ତ୍ରବଳ ଗୋରୁ ପଲ ଛଡ଼ାଇ ଆଣିବେ । କୀଚକ ତ ନାହାନ୍ତି ଆଉ ବିରାଟଙ୍କୁ ସାହାଯ୍ୟ କରିବ କିଏ ? ଯଦି ପାଣ୍ଡବମାନେ ସେଠାରେ ଥାଆନ୍ତି ତେବେ ରାଜାଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ସେମାନେ ଆଗେଇ ଆସିବେ । ଫଳରେ ସେମାନଙ୍କୁ ଚିହ୍ନଟ କରିବାରେ ଆଉ ଅସୁବିଧା ହେବ ନାହିଁ—ନିଶ୍ଚିତ ଭାବରେ ସେମାନେ ଧରା ପଡ଼ିବେ । ଫଳରେ ପୁଣି ତ୍ରୟୋଦଶ ବର୍ଷ ବନବାସ ।

ଏଥିରେ ଦୁର୍ଯ୍ୟୋଧନ ଉଲ୍ଲସିତ ହୋଇ ମତ୍ସ୍ୟଦେଶ ଆକ୍ରମଣ କରିବା ପାଇଁ ତାଙ୍କର ବିରାଟ କୌରବ ବାହିନୀକୁ ଆଦେଶ ଦେଲେ ।

ହସ୍ତିନାପୁରରେ ଯୁଦ୍ଧ ଆୟୋଜନ ଚାଲିଥିଲା ବେଳେ ତ୍ରିଗର୍ତ୍ତର ରାଜା ସୁଶର୍ମା ସେଠାରେ ଉପସ୍ଥିତ ଥାଆନ୍ତି । ବିରାଟ ତାଙ୍କର ପ୍ରଧାନ ଶତ୍ରୁ । କୀଚକ ସାହାଯ୍ୟରେ ଅତୀତରେ ସେ ତାଙ୍କୁ ନାନା ଅପମାନ ଦେଇଥାନ୍ତି । ତାଙ୍କୁ ଯୁଦ୍ଧରେ ଜୟ କରି ତ୍ରିଗର୍ତ୍ତ ରାଜ୍ୟରୁ ବିତାଡ଼ିତ କରି ଦେଇଥାନ୍ତି । ବର୍ତ୍ତମାନ ସୁଯୋଗ ମିଳିଗଲା । କୀଚକ ଆଉ ନାହିଁ । ଏହି ସମୟରେ ସେ ଯଦି ବିରାଟ ରାଜ୍ୟ ଆକ୍ରମଣ କରନ୍ତି ଦୁର୍ବଳ ରାଜା ତାଙ୍କର ପ୍ରତିରୋଧ କରିପାରିବେ ନାହିଁ—ପରାଜିତ ହେବେ । ପୂର୍ବ ଅପମାନର ସେ ପ୍ରତିଶୋଧ ନେବେ ।

ଦୁର୍ଯ୍ୟୋଧନଙ୍କ ମନକୁ ଏହା ମାନିଲା । ସେ ମତ୍ସ୍ୟ ଦେଶକୁ ଦକ୍ଷିଣ ଦିଗରୁ ଆକ୍ରମଣ କରିବାକୁ ତାଙ୍କୁ ପରାମର୍ଶ ଦେଲେ । ଆଉ ନିଜ ସୈନ୍ୟମାନେ ଉତ୍ତର ଦିଗରୁ ଉକ୍ତ ରାଜ୍ୟ ଆକ୍ରମଣ କରିବେ । ଏହିପରି ଷଣ୍ଡୁ ଆସି ଆକ୍ରମଣରେ ବିଚଳିତ ହୋଇ ବିରାଟ ନିଶ୍ଚିତ ଭାବରେ ଅନ୍ୟର ସାହାଯ୍ୟ ଲୋଡ଼ିବେ । ପାଣ୍ଡବମାନେ ନିଜ ନିଜର ଅଜ୍ଞାତବାସର ଏହି ବିପଦରେ ସ୍ଥିର ରହି ପାରିବେ ନାହିଁ । ତାଙ୍କୁ ସାହାଯ୍ୟ କରିବା ପାଇଁ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେବେ । ତାଙ୍କର ଉଦ୍ଦେଶ୍ୟ ସାଧିତ ହେବ ।

ଏହି ପ୍ରସ୍ତାବ କାର୍ଯ୍ୟକାରୀ ହେଲା । ସୁଶର୍ମା ଦକ୍ଷିଣ ଦିଗରୁ ମତ୍ସ୍ୟ ରାଜ୍ୟ ଆକ୍ରମଣ କଲେ । ବିରାଟ ତାଙ୍କର ସୈନ୍ୟ ବାହିନୀ ସହିତ ଏହି ଆକ୍ରମଣର ପ୍ରତିରୋଧ କରିବା ପାଇଁ ବାହାରିଗଲେ ।

ତାପରେ ଆରମ୍ଭ ହେଲା ଉତ୍ତର ଦିଗରୁ କୌରବ ମାନଙ୍କର ଆକ୍ରମଣ । ସେତେବେଳେ ରାଜଧାନୀରେ କେହି ନ ଥାନ୍ତି । ଥାଆନ୍ତି କେବଳ ବିରାଟଙ୍କ ପୁତ୍ର ଯୁବରାଜ ଉତ୍ତର । ଗୋରକ୍ଷକମାନେ ଆସି ସମ୍ବାଦ ଦେଲେ କୌରବ ବାହିନୀ ତାଙ୍କର ବିରାଟ ଗୋରୁ ପଲ ଅଡ଼ାଇ ନେଉଛନ୍ତି, ସେମାନେ ନିରସ୍ତ୍ର । ରାଜା ତ ସୁଶର୍ମାଙ୍କ ସହିତ ଯୁଦ୍ଧରେ ବ୍ୟାପୃତ । ଆପଣ ରାଜପୁତ୍ର । ଏ ବିପଦରେ ଆମ୍ଭମାନଙ୍କୁ ସାହାଯ୍ୟ ନ କଲେ ଆଉ କିଏ କରିବ ?

ଗୋରକ୍ଷକମାନେ ଉତ୍ତରଙ୍କ ନିକଟରେ ଏହି ଅଭିଯୋଗ ଉପସ୍ଥାପିତ କଲାବେଳେ ପ୍ରାସାଦର ନାରୀମାନେ ଉପସ୍ଥିତ ଥାନ୍ତି । ନିଜର ପ୍ରୌଢ଼ି ଦେଖାଇବା ପାଇଁ ଉତ୍ତର କହିଲେ ଏକ ଗର୍ବର କଥା । ଯଦି ମୋର ରଥ ଚଳାଇବା ପାଇଁ ଜଣେ ସାରଥି ପାଆନ୍ତି ତେବେ ମୁଁ ଏକାକୀ କୌରବମାନଙ୍କଠାରୁ ଗୋରୁପଲ ଅକ୍ଲେଶରେ ଛଡ଼ାଇ ଥାଆନ୍ତି । ସେତେବେଳେ ଲୋକେ ଜାଣନ୍ତେ ଅସ୍ତ୍ର ଚାଳନାରେ ମୁଁ କିପରି ସିଦ୍ଧହସ୍ତ । ଅର୍ଜୁନ ଓ ମୋ ମଧ୍ୟରେ ଯେ କିଛି ପ୍ରଭେଦ ନାହିଁ ଏହା ସମସ୍ତେ ଉପଲବ୍ଧି କରିପାରନ୍ତେ ।

ଦ୍ରୌପଦୀ ସେତେବେଳେ ଘର ଭିତରେ ଥାଇ ସବୁ ଶୁଣୁଥାନ୍ତି ଓ ମନେ ମନେ ହସୁଥାନ୍ତି । ସେ ସଙ୍ଗେ ସଙ୍ଗେ ବାହାରେ ଆସି କହିଲେ ଏଇ କଥା ତ । ବୃହନ୍ନଳା ଅର୍ଜୁନଙ୍କ ରଥରେ ସାରଥୀ ଥିଲେ । ଆଉ ମଧ୍ୟ ମୁଁ ଜାଣେ ସେ ଅର୍ଜୁନଙ୍କଠାରୁ ଯୁଦ୍ଧ ବିଦ୍ୟା ଶିକ୍ଷା କରିଅଛନ୍ତି । ତାଙ୍କୁ ଆଦେଶ ଦେଲେ ସେ ଆପଣଙ୍କର ସାରଥୀ ହୋଇ ରଥ ଚାଳନା କରିବେ ।

ତାହା ହିଁ ହେଲା । ବୃହନ୍ନଳା ସାରଥୀ ହେଲେ । ଉତ୍ତରଙ୍କ ରଥ ଅବିଳମ୍ବେ କୌରବ ସୈନ୍ୟ ବାହିନୀର ସମ୍ମୁଖୀନ ହେଲା । ଉତ୍ତର କହି ହେଉଥିଲେ ସିନା ମାତ୍ର ଏହି ବିରାଟ ବାହିନୀର ସମ୍ମୁଖୀନ ହେଲା ବେଳେ ତାଙ୍କର ବୁଦ୍ଧି ହଜିଗଲା । ଯେଉଁଠାରେ ଭୀଷ୍ମ, ଦ୍ରୋଣ କର୍ଣ୍ଣ ପ୍ରଭୃତି ମହାରଥୀମାନେ ଉପସ୍ଥିତ ସେଠାରେ ଉତ୍ତରଙ୍କ ପରି ଯୁଦ୍ଧ ବିଦ୍ୟାରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଶିଶୁ ଆଉ କଣ କରିପାରିଥାନ୍ତେ !

ସେତେବେଳକୁ ଅଜ୍ଞାତବାସ ସମୟ ଶେଷ ହୋଇ ଯାଇଥାଏ । ଆଉ ଡ଼ର କଣ ? ଗାଣ୍ଡୀବ ଧନୁର ଟଙ୍କାର କୌରବ ବାହିନୀକୁ ଥରହର କରିଦେଲା । ଅନାୟାସରେ ଅର୍ଜୁନ ଏହି ବିପୁଳ ବାହିନୀକୁ ନିଜର ଅମୋଘ ଶରଦ୍ୱାରା ଅସ୍ତବ୍ୟସ୍ତ କରି ପକାଇଲେ । ବିରାଟ କୌରବ ବାହିନୀ ଛତ୍ରଭଙ୍ଗ ଦେଲେ ।

ସେତେବେଳକୁ ଭୀମଙ୍କ ସାହାଯ୍ୟରେ ବିରାଟ ସୁଶର୍ମାଙ୍କୁ ପରାସ୍ତ କରି ଫେରି ଆସିଥାନ୍ତି । ଏହି ସମୟରେ ଦୂତ ସମ୍ବାଦ ଦେଲା କୌରବବାହିନୀଙ୍କର ପରାଜୟ ଓ ଉତ୍ତରଙ୍କ ବିଜୟ । ରାଜା ଏହା ବିଶ୍ୱାସ କରିପାରିଲେ ନାହିଁ । ଯୁଧିଷ୍ଠିର କହିଲେ, ଅବିଶ୍ୱାସ କରିବାର କାରଣ ନାହିଁ । ବୃହନ୍ନଳା ଯେତେବେଳେ ରାଜପୁତ୍ରଙ୍କର ସାରଥି ବିଜୟ ସୁନିଶ୍ଚିତ । ଯୁଧିଷ୍ଠିରଙ୍କର ଏହି ମନ୍ତବ୍ୟ ରାଜାଙ୍କୁ ସୁଖ ଲାଗିଲା ନାହିଁ । ଯିଏ ରାଜପ୍ରାସାଦରେ ନୃତ୍ୟ ଗୀତ ଶିକ୍ଷକରୂପେ ପରିଚିତ ତାଙ୍କର ପ୍ରଶଂସା ତାଙ୍କୁ ଅବାସ୍ତବ ମନେହେଲା ।

ଯାହାହେଉ ବିଜୟୀପୁତ୍ରର ଉପଯୁକ୍ତ ଅଭ୍ୟର୍ଥନା ପାଇଁ ରାଜା ତତ୍ପର ହୋଇ ପଡ଼ିଲେ । ବର୍ତ୍ତମାନ ତାଙ୍କର ଆନନ୍ଦ କଥାରେ କୁହାଯାଇ ନ ପାରେ ।

ଆନନ୍ଦବେଳେ ସାଧାରଣତଃ ଲୋକେ ଖେଳିବା ପାଇଁ ଆଗ୍ରହ ପ୍ରକାଶ କରିଥାନ୍ତି । ବିରାଟ ଏଥିରୁ ବାଦ ଯିବେ କିପରି ? ଯୁଧିଷ୍ଠିରଙ୍କୁ ଡ଼ାକି ପଶାଖେଳରେ ବସିଗଲେ । ଖେଳ ଚାଲିଥାଏ—ଆଉ ରାଜା ନିଜ ପୁଅର ବୀରତ୍ୱର ପ୍ରଶଂସା କରୁଥାନ୍ତି ।

ଯୁଧିଷ୍ଠିର କହୁଥାନ୍ତି, ବାସ୍ତବିକ ଆପଣଙ୍କର ପୁଅ ଭାଗ୍ୟବାନ । ତା ନ ହୋଇଥିଲେ ସେ ବୃହନ୍ନଳାପରି ସାରଥି ପାଇ ନଥାନ୍ତେ । ରାଜା ଯେତେଥର ଉତ୍ତର କଥା ଉତ୍ଥାପନ କରୁଥାନ୍ତି ଯୁଧିଷ୍ଠିରଙ୍କ ମୁହଁରେ ସେତିକି ବାର ସାରଥୀ ବୃହନ୍ନଳାଙ୍କ ପ୍ରଶଂସା । ରାଜା ଆଉ ସମ୍ଭାଳି ପାରିଲେ ନାହିଁ । ରାଗରେ ପଶାକାଠି ଯୁଧିଷ୍ଠିରଙ୍କର ମୁହଁକୁ ଲକ୍ଷ୍ୟ କରି ଫିଙ୍ଗିଦେଲେ । ପଶାକାଠି ଯୁଧିଷ୍ଠିରଙ୍କର କପାଳରେ ବାଜିଲା—କପାଳ ଫାଟିଗଲା । ରକ୍ତ ଝରଝର ହୋଇ ବୋହି ଆସିଲା ।

ଅନ୍ୟ କେହି ହୋଇଥିଲେ ଏପରି ଅବସ୍ଥାରେ ଧୈର୍ଯ୍ୟଧରି ରହିପାରି ନ ଥାନ୍ତେ । ଯୁଧିଷ୍ଠିର ଜାଣିଥିଲେ; ଅଜ୍ଞାତବାସ ଶେଷ ହୋଇଛି । ତାଙ୍କର ସାମାନ୍ୟ ଇଙ୍ଗିତରେ ଭୀମ ବିରାଟଙ୍କୁ ମାରି ଗୁଣ୍ଡା କରିଦେଇଥାନ୍ତେ । ମାତ୍ର ଯୁଧିଷ୍ଠିର ଥିଲେ ବିନୟର ପ୍ରତିମୂର୍ତ୍ତି । ବିରାଟ ରାଜାଙ୍କ ଦୟାରୁ ସେ ସଫଳତାର ସହିତ ଏକବର୍ଷ ଅଜ୍ଞାତବାସ ଶେଷ କରିଅଛନ୍ତି । ଏଥିପାଇଁ ସେ କୃତଜ୍ଞ । ଏପରି ଉପକାରୀ ବ୍ୟକ୍ତିର କଣ ସେ ଅନିଷ୍ଟ କାମନା କରିପାରନ୍ତେ !

ଏହି ଘଟଣାରୁ ଯୁଧିଷ୍ଠିରଙ୍କର ଅନନ୍ୟ ସାଧାରଣ ଧୈର୍ଯ୍ୟ ଓ ସହନଶୀଳତାର ପରିଚୟ ମିଳେ ।

ପାଣ୍ଡବମାନଙ୍କର ବନବାସ ଓ ଅଜ୍ଞାତବାସ ଶେଷ ହୋଇଛି—ଏହି ଖବର ବନାଗ୍ନି ପରି ଚତୁର୍ଦ୍ଦିଗରେ ବ୍ୟାପିଗଲା । ସେମାନଙ୍କର ବନ୍ଧୁବାନ୍ଧବ, ଆତ୍ମୀୟ ସୋଦର ଦଳ ଦଳ ହୋଇ ସେମାନଙ୍କୁ ସାକ୍ଷାତ କରିବାକୁ ଆସିଲେ । ଦ୍ୱାରକାରୁ ଶ୍ରୀକୃଷ୍ଣ ଓ ବଳରାମ ଯାଦବ ରଥୀ ମହାରଥୀମାନଙ୍କ ସହିତ ଉପସ୍ଥିତ ହେଲେ । ସମସ୍ତେ ଏକତ୍ର ହେବାରୁ ବିଷୟ ପଡ଼ିଲା ଏହାପରେ କଣ କରିବାକୁ ହେବ । ପାଣ୍ଡବମାନେ ନ୍ୟାଯ୍ୟ ରାଜ୍ୟ କିପରି ଲାଭ କରିବେ ? କେହି କେହି ମତ ଦେଲେ ଦୁର୍ଯୋଧନ ଯେପରି ଲୋକ ଶାନ୍ତିପୂର୍ଣ୍ଣଭାବରେ ସେ କଦାପି ପାଣ୍ଡବମାନଙ୍କୁ ସେମାନଙ୍କର ରାଜ୍ୟ କଦାପି ଦେବେ ନାହିଁ । ଏଥିପାଇଁ ଯୁଦ୍ଧ କରିବାକୁ ପଡ଼ିବ । ମାତ୍ର ଶ୍ରୀକୃଷ୍ଣ ଏଥିରେ ରାଜିହେଲେ ନାହିଁ । ସେ କହିଲେ 'ଆମଆଡ଼ୁ ଶାନ୍ତିପୂର୍ଣ୍ଣ ଉପାୟରେ ସମସ୍ୟାର ସମାଧାନ ପାଇଁ ଚେଷ୍ଟା କରିବାକୁ ହେବ । ଯଦି ଏ ଦିଗରେ ଆମେ ବିଫଳ ହେବା ତେବେ ଯୁଦ୍ଧ ଅବଶ୍ୟମ୍ଭାବୀ । ସେପରି ସ୍ଥଳରେ ଅନ୍ୟାନ୍ୟ ରାଜା ଆମକୁ ସମର୍ଥନ କରିବେ । ଯୁଦ୍ଧ ଯେ କେତେ ଭୀଷଣ ସମସ୍ତଙ୍କର ଉପଲବ୍ଧି କରିବା ଆବଶ୍ୟକ । ଏହାଦ୍ୱାରା ଧନହାନୀ ଜନକ୍ଷୟ ହୁଏ । ବହୁ ପୁନାର ସଂସାର ଚୂନା ହୁଏ । ସୁତରାଂ ସର୍ବାଗ୍ରାସୀ ଯୁଦ୍ଧ କିପରି ଏଡ଼ାଇ ଦିଆଯାଇପାରିବ ସେ ଦିଗରେ ସବୁ ପ୍ରକାର ଚେଷ୍ଟା ଆବଶ୍ୟକ । ଆହୁରି ଦରକାର ହେଲେ ସେ ଦୂତ ରୂପରେ ହସ୍ତିନାପୁରକୁ ଯାଇ ଭାଇଭାଇ ମଧ୍ୟରେ ଯେପରି ସଂଘର୍ଷ ନ ହୁଏ, ଉଭୟେ ଯେପରି ଶାନ୍ତିରେ ପୃଥକରେ ବସବାସ କରିପାରିବେ ସେ ଦିଗରେ ଚେଷ୍ଟା କରିବେ ।

କୃଷ୍ଣଙ୍କର ପ୍ରସ୍ତାବ ସମସ୍ତଙ୍କ ମନକୁ ପାଇଲା । ପ୍ରଥମେ କୁଳ ପୁରୋହିତ ଧୌମ୍ୟ ଦୂତରୂପେ ପ୍ରେରିତ ହେଲେ । ସେ ହସ୍ତିନାପୁରରେ ଭୀଷ୍ମ, ଦ୍ରୋଣ, ଧୃତରାଷ୍ଟ୍ରଙ୍କ ସହିତ ପାଣ୍ଡବମାନଙ୍କୁ ସେମାନଙ୍କ ରାଜ୍ୟ ଫେରାଇ ଦେବାକୁ ଆଲୋଚନା କଲେ । ସମସ୍ତେ ଏଥିରେ ରାଜି ହେଲେ, ମାତ୍ର ଦୁର୍ଯୋଧନ ସଫା କହିଦେଲେ ଖେଳରେ ବାଜିରଖି ଯୁଧିଷ୍ଠିର ତାଙ୍କର ସମସ୍ତ ହରାଇଛନ୍ତି । ବର୍ତ୍ତମାନ ଯଦି ସେ ଇଚ୍ଛାକରନ୍ତି ତେବେ ତାହା ସେ ମାଗିବା ଦରକାର । ନ୍ୟାଯ୍ୟ ଦାବୀ କଥା ଉଠିନପାରେ । ତାଙ୍କର କଥା ରହିଲା-କୌରବ ମୁଖ୍ୟମାନେ ତାଙ୍କୁ କିଛି କହିପାରିଲେ ନାହିଁ । ନୀରବ ରହିଲେ ।

ଧୌମ୍ୟ ବିଫଳ ମନୋରଥ ହୋଇ ଫେରିବା ପରେ କୃଷ୍ଣ ନିଜେ ଦୂତ ରୂପେ ଗଲେ । ସେ କୌରବମାନଙ୍କ ସହିତ ଯୁଦ୍ଧର ଅପକାରିତା ଓ ଶାନ୍ତିର ଉପଯୋଗିତା ବିଷୟରେ କୌରବ ମୁଖ୍ୟମାନଙ୍କ ସହିତ ଆଲୋଚନା କଲେ । ଭାଇ ଭାଇମାନଙ୍କ ମଧ୍ୟରେ ଶାନ୍ତି ସୌହାର୍ଦ୍ଦ୍ୟ ପ୍ରତିଷ୍ଠା ପାଇଁ ଅନ୍ତତଃ ସେମାନଙ୍କୁ ପାଞ୍ଚଖଣ୍ଡି ଗାଁ ଦେବାପାଇଁ ପ୍ରସ୍ତାବ ରଖିଲେ ।

କୃଷ୍ଣଙ୍କ କଥାର ମର୍ମ ଭୀଷ୍ମ ଧୃତରାଷ୍ଟ୍ର ପ୍ରଭୃତି କୁରୁକୁଳର ମୁରବୀମାନେ ହୃଦୟଙ୍ଗମ କରି ଦୁର୍ଯୋଧନଙ୍କୁ ଏଥିରେ ରାଜି ହେବା ପାଇଁ ପ୍ରବର୍ତ୍ତାଇଲେ; ମାତ୍ର

ତାହାର କଥା ସେ ରଖିଲେ ନାହିଁ—'ବିନା ଯୁଦ୍ଧେ ନ ଦେବଇ ସୂଚ୍ୟଗ୍ର ମେଦିନୀ' ଏହି ପ୍ରତିଜ୍ଞାରେ ଅଟଳ ରହିଲେ । କୃଷ୍ଣ ମନଦୁଃଖରେ ହସ୍ତିନାରୁ ଫେରିଲେ ।

ଶାନ୍ତିଦୂତମାନଙ୍କର ଚେଷ୍ଟା ବିଫଳ ହେବାରୁ ପାଣ୍ଡବମାନେ ଯୁଦ୍ଧର ଆୟୋଜନ ଜୋରସୋରରେ ଆରମ୍ଭ କରିଦେଲେ । ଯୁଦ୍ଧପାଇଁ ପ୍ରସ୍ତୁତ ହେବାକୁ । ସେମାନଙ୍କର ବନ୍ଧୁରାଜ୍ୟମାନଙ୍କୁ ଖବର ଗଲା ଏଣେ ଏହି ଯୁଦ୍ଧରେ କିଏ ପାଣ୍ଡବ ବାହିନୀର ମୁଖ୍ୟ ସେନାପତି ହେବେ ଏହିଗରେ ବିସ୍ତୃତ ଆଲୋଚନା ଚାଲିଲା । ଏ ବିଷୟରେ ବହୁ ତର୍କ ବିତର୍କ ପରେ ସ୍ଥିର ହେଲା ଦ୍ରୁପଦଙ୍କର ପୁତ୍ର ଧୃଷ୍ଟଦ୍ୟୁମ୍ନ ପାଣ୍ଡବବାହିନୀର ମୁଖ୍ୟ ସେନାପତି ହେବେ । କୃଷ୍ଣ ଏଥିରେ ନିଜର ସ୍ୱୀକୃତି ଜଣାଇଲେ । ଯୁଧିଷ୍ଠିର ମଧ୍ୟ କୃଷ୍ଣଙ୍କ ସହିତ ଏକମତ ହେଲେ ।

ଧୃଷ୍ଟଦ୍ୟୁମ୍ନ ଏହି ଗୁରୁଦାୟିତ୍ୱ ବହନ କରିବା ପାଇଁ ସମସ୍ତଙ୍କର ଆଶୀର୍ବାଦ ଭିକ୍ଷାକଲେ । ଶାନ୍ତିଦୂତ ହସ୍ତିନାପୁରରୁ ବିଦାୟ ନେବା ପରେ କୌରବମାନଙ୍କ ପକ୍ଷରୁ ମଧ୍ୟ ଅଦ୍ଭୁତପୂର୍ବ ରଣସଜ୍ଜା ଆରମ୍ଭ ହୋଇଗଲା । କୌରବ ମୁଖ୍ୟମାନେ ଏକତ୍ର ହୋଇ ସ୍ଥିର କଲେ ଭୀଷ୍ମ ଏହି ଯୁଦ୍ଧରେ ସେମାନଙ୍କର ମୁଖ୍ୟ ସେନାପତି ହେବେ । ଭୀଷ୍ମ ଏଥିରେ ରାଜି ହେଲେ ଗୋଟିଏ ସର୍ତ୍ତରେ । ସର୍ତ୍ତଟି ହେଲା ସେ ପ୍ରତ୍ୟେକ ଦିନ ଯୁଦ୍ଧରେ ଦଶ ସହସ୍ର ପାଣ୍ଡବ ସୈନ୍ୟ ହତ୍ୟା କରିବେ ମାତ୍ର ପାଣ୍ଡବମାନଙ୍କୁ ମାରିବେ ନାହିଁ, କାରଣ ଏହି ଯୁଦ୍ଧ ତାଙ୍କର ବିନା ମନ୍ତ୍ରଣାରେ ଆୟୋଜନ କରାଯାଇଛି ।

ଏହି ସର୍ତ୍ତରେ କୁରୁମୁଖ୍ୟମାନେ ରାଜିହେଲେ ।

ଏହାପରେ ମହାଭାରତ ଯୁଦ୍ଧପାଇଁ ଉଭୟ କୁରୁ ଓ ପାଣ୍ଡବମାନଙ୍କ ପକ୍ଷରୁ ପ୍ରସ୍ତୁତି ଜୋରସୋରରେ ଆଗେଇ ଚାଲିଲା ।

### ଯୁଦ୍ଧ କ୍ଷେତ୍ରରେ

ଯୁଦ୍ଧ ପାଇଁ ଉଭୟ ପାଣ୍ଡବ ଓ କୌରବବାହିନୀ ଯୁଦ୍ଧକ୍ଷେତ୍ରରେ ଅବସ୍ଥିତ । କୁରୁକ୍ଷେତ୍ର ଯୁଦ୍ଧଭୂମିର ପଶ୍ଚିମ ଭାଗରେ କୌରବମାନଙ୍କର ଅଗଣନ୍ତି ସୈନ୍ୟସାମନ୍ତ । ରଥ, ଘୋଡ଼ା, ହାତୀ, ସମସ୍ତେ ଯୁଦ୍ଧସଜ୍ଜାରେ ସଜ୍ଜିତ । ରେ ରେ କାର ଶବ୍ଦରେ ଗଗନ ପବନ ମୁଖରିତ ।

ପୂର୍ବପଟେ ପାଣ୍ଡବବାହିନୀ । ଆକାଶରେ ଅଗଣିତ ତାରକା ମଧ୍ୟରେ ଚନ୍ଦ୍ରପରି ନନ୍ଦିଘୋଷ ରଥ ଶୋଭାପାଉଛି । ରଥ ପତାକାରେ ହନୁମାନଙ୍କ ଅଙ୍କିତ ଛବି ନୀଳ ଆକାଶ ତଳେ ଫରଫର ଉଡ଼ୁଛି । ସୈନ୍ୟମାନଙ୍କ ହସ୍ତରେ ଧନୁଶର । ଗଦା, ଖଡ୍ଗ ଆଉ ଅନେକ ପ୍ରକାର ମାରଣାସ୍ତ୍ର ଚକ୍ ଚକ୍ କରୁଛି । ଯୁଦ୍ଧ ଆରମ୍ଭ ହୋଇନାହିଁ ।

ଏହିପରି ଉଦ୍‌ବେଗଜନକ ପରିସ୍ଥିତି ମଧ୍ୟରେ ଦେଖାଗଲା, ଯୁଧିଷ୍ଠିର ନିଜ ରଥରୁ ଓହ୍ଲାଇ ନିରସ୍ତ୍ରଭାବରେ ପଦବ୍ରଜରେ ଚାଲିଛନ୍ତି କୌରବ ବାହିନୀ ଅଭିମୁଖେ ।

କୌରବବାହିନୀ ଆଚମ୍ବିତ । ପାଣ୍ଡବ ସୈନ୍ୟମାନଙ୍କ ଉତ୍କଣ୍ଠାର ସୀମା ନାହିଁ ।

'ଯୁଧିଷ୍ଠିର କଣ କରୁଛନ୍ତି' ଏହି ପ୍ରଶ୍ନ ସମସ୍ତଙ୍କ ମୁଖରେ ।

ଅର୍ଜୁନ ବିଚଳିତ । କୃଷ୍ଣ ଏବଂ ଅନ୍ୟ ଭାଇମାନଙ୍କର ଆଶଙ୍କା ବୋଧହୁଏ ଏହି ଶେଷ ମୁହୂର୍ତ୍ତରେ ଯୁଧିଷ୍ଠିର ନିଜର ମତ ବଦଳାଇ ଯେକୌଣସି ସର୍ତ୍ତରେ ଶାନ୍ତି ସ୍ଥାପନ ପାଇଁ ଚେଷ୍ଟିତ ।

'ରାଜା, ଶତ୍ରୁପକ୍ଷର ସୈନ୍ୟମାନେ ଯୁଦ୍ଧସଜ୍ଜାରେ ସଜ୍ଜିତ । ପ୍ରତ୍ୟେକଙ୍କ ହସ୍ତରେ ନାନା ପ୍ରକାର ମାରଣାସ୍ତ୍ର, ଏପରି ଅବସ୍ଥାରେ ଆପଣ ନିରସ୍ତ୍ରଭାବରେ ସେମାନଙ୍କ ଆଡ଼କୁ ଯିବାର କାରଣ କଣ ? ଅର୍ଜୁନଙ୍କ ସ୍ୱର ଉତ୍କଣ୍ଠାରେ ପୂର୍ଣ୍ଣ ।

କୃଷ୍ଣ ତ ସମସ୍ତଙ୍କର ମନକଥା ଜାଣନ୍ତି । ବୋଧହୁଏ ଏହି ଭୟାବହ ଯୁଦ୍ଧର ଆରମ୍ଭ ପୂର୍ବରୁ ଗୁରୁଜନମାନଙ୍କଠାରୁ ଆଶୀର୍ବାଦ ଭିକ୍ଷା କରିବା ତାଙ୍କର ଏଠିଁ ଯାଇବାର ଉଦ୍ଦେଶ୍ୟ । ସମ୍ଭବତଃ ମନେକଲେ ଏପରି ଏକ ଗୁରୁତର କାର୍ଯ୍ୟରେ ହସ୍ତକ୍ଷେପ କରିବା ପୂର୍ବରୁ ବଡ଼ମାନଙ୍କର ପରାମର୍ଶ ତଥା ଆଶୀର୍ବାଦ ଭିକ୍ଷାକରିବା ସୁନ୍ଦର ହେବ । ପିତାମହ ଭୀଷ୍ମ, ଗୁରୁ ଦ୍ରୋଣଙ୍କ ପାଖକୁ ଯିବାକୁ ହେବ । ଏପରି ପରିସ୍ଥିତିରେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଯିବା ପରମ୍ପରାବିରୁଦ୍ଧ, ତେଣୁ ଏହି ନିରସ୍ତ୍ର ଯାତ୍ରା ବୋଲି କୃଷ୍ଣ ମନ୍ତବ୍ୟ ଦେଲେ ।

ଯୁଧିଷ୍ଠିର ଲମ୍ବେ ଲମ୍ବେ ଯାଇ ପହଞ୍ଚିଲେ ଭୀଷ୍ମଙ୍କ ନିକଟରେ । ତାଙ୍କର ପାଦଛୁଇଁ ପ୍ରଣାମ କଲେ । ପାଦଧୂଳି ନେଇ ମୁଣ୍ଡରେ ମାରିଲେ । ଆଉ ଅତିଶୟ ବିନମ୍ର ସହିତ କହିଲେ, ପିତାମହ ଏହି ଯୁଦ୍ଧ ଆରମ୍ଭ ପାଇଁ ସଦୟ ଅନୁମତି ଦିଅନ୍ତୁ । ଆମ୍ଭେମାନେ ଦୁର୍ଜୟ ଆଉ ଅତୁଳନୀୟ ସ୍ନେହଶୀଳ ପିତାମହଙ୍କ ସହିତ ଯୁଦ୍ଧ କରିବା ପାଇଁ ସାହସ କରୁଛୁ । ମୁଁ ମୋ ଭାଇମାନଙ୍କ ପକ୍ଷରୁ ତଥା ବିଶାଳ ପାଣ୍ଡବବାହିନୀଙ୍କ ପକ୍ଷରୁ ଆପଣଙ୍କର ଆଶୀର୍ବାଦପ୍ରାର୍ଥୀ ।

ପିତାମହଙ୍କ ଆଖିରେ ଲୁହ - ବାଷ୍ପ ଗଦଗଦ୍ ସ୍ୱରରେ କହିଲେ ଗୌରବାନ୍ୱିତ ଭରତଙ୍କ କୁଳରେ ତୁମର ଜନ୍ମ । ସେହି ବଂଶର ପରମ୍ପରା ଅନୁସାରେ ତୁମେ କାର୍ଯ୍ୟ କରିଛ । ମୁଁ ସ୍ୱାଧୀନ ନୁହେଁ, କୁରୁରାଜାଙ୍କୁ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତିବଦ୍ଧ । ତୁମର ପରାଜୟ ହେବ ନାହିଁ । ଯାଅ ଯୁଦ୍ଧକର, ବିଜୟୀ ହେବ ।

ତାପରେ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଯାଇଁ ଯୁଧିଷ୍ଠିର ସାଷ୍ଟାଙ୍ଗ ପ୍ରଣିପାତ ହୋଇ ତାଙ୍କର ଆଶୀର୍ବାଦ ଭିକ୍ଷାକଲେ । ଆଚାର୍ଯ୍ୟ ଶିଷ୍ୟକୁ ତକ୍ଷଣ ଦୁଇ ହାତରେ ଉଠାଇ ଆଣି ଶ୍ରଦ୍ଧାପୂର୍ଣ୍ଣ ସ୍ୱରରେ କହିଲେ, ଧର୍ମନନ୍ଦନ ! କୌରବମାନଙ୍କ ଅନ୍ନରେ ମୁଁ ପ୍ରତିପାଳିତ

ସେମାନଙ୍କ ସପକ୍ଷରେ ଯୁଦ୍ଧ କରିବା ମୋର ନୈତିକ କର୍ତ୍ତବ୍ୟ । ତୁମେ ଏ ଯୁଦ୍ଧରେ ବିଜୟୀ ହୁଅ ଏହାହିଁ ମୋର ଆଶୀର୍ବାଦ ।

ଏହିପରି ଶଲ୍ୟ ଓ କୃପାଚାର୍ଯ୍ୟ ପ୍ରଭୃତି ଗୁରୁଜନମାନଙ୍କ ଠାରୁ ଆଶୀର୍ବାଦ ନେଇ ଯୁଧିଷ୍ଠିର ଫେରିଆସିଲେ ।

ଏହା ଗପ ହେଲେ ମଧ୍ୟ ମହାକବି ମହାନ୍ ଋଷି ଏହାଦ୍ୱାରା ଦର୍ଶାଇଛନ୍ତି ଗୁରୁଜନମାନଙ୍କର ଆଶୀର୍ବାଦ କେଡ଼େ ମହତ୍ତ୍ୱପୂର୍ଣ୍ଣ । ଅତୀତରେ ଏହାହିଁ ଥିଲା ଆଚରଣ ବିଧି । ଯେଉଁମାନେ ଗୁରୁଜନମାନଙ୍କୁ ଯଥାବିଧି ସମ୍ମାନ ପ୍ରଦର୍ଶନ କରନ୍ତି ସେମାନେ ତାଙ୍କଠାରୁ ଆଶୀର୍ବାଦ ଲାଭକରନ୍ତି । ମଙ୍ଗଳ ହୁଏ ସମ୍ମାନ ପ୍ରଦର୍ଶନକାରୀଙ୍କର, ସମ୍ମାନିତ ବ୍ୟକ୍ତିଙ୍କର ନୁହେଁ । ବର୍ତ୍ତମାନ ଏହି ଆଚରଣ ବିଧିର ଉଲ୍ଲଂଘନ ହେଉଛି । ଫଳରେ ଯାବତୀୟ ଅଶାନ୍ତି । ପୂଜ୍ୟପୂଜା ଭାରତୀୟ ପରମ୍ପରାରେ, ପ୍ରତିଷ୍ଠିତ ଏହା ସର୍ବଦା ସ୍ମରଣ ରଖିବା ଉଚିତ ।

ମହାଭାରତ ଯୁଦ୍ଧ ଆରମ୍ଭ ହୋଇଗଲା । ରଣକ୍ଷେତ୍ରରେ ହଟ୍ଟଗୋଳ ଉଠିଲା, ଗଗନ ପବନ ବିଦୀର୍ଣ୍ଣ ହେଲା । ଉଭୟ ପକ୍ଷରୁ ଶତଶତ ସୈନ୍ୟଙ୍କ ମୁଣ୍ଡ ଗଣ୍ଡିରୁ ଅଲଗା ହୋଇ ଗଛରୁ ତାଳପଣ ତଳେ ପଡ଼ିଲା । ଯେଉଁଆଡ଼େ ଦୃଷ୍ଟିଦିଅ ଖାଲି ସୈନ୍ୟମାନଙ୍କର ଗଦା ଗଦା ମୃତ ଦେହ । ଭଙ୍ଗାରଥ ଆଉ ତେଜ, ଅଶ୍ୱମାନଙ୍କର ଭଗ୍ନ ଅଙ୍ଗପ୍ରତ୍ୟଙ୍ଗ । ଖାଲି ହତ୍ୟା-ହତ୍ୟା । ରକ୍ତର ନଦୀ ଛୁଟିଥାଏ । ଏସବୁ ପ୍ରତି କାହାରି ଭ୍ରୂକ୍ଷେପ ନାହିଁ ।

ମହର୍ଷି ବ୍ୟାସଦେବଙ୍କର ଭବିଷ୍ୟବାଣୀ ସତ୍ୟ ହେଲା । ଏହି ରକ୍ତାକ୍ତ ସମର ଯୁଧିଷ୍ଠିର ତାଙ୍କର ଶତ ଚେଷ୍ଟାସତ୍ତ୍ୱେ ଏଡ଼ାଇ ଦେଇପାରିଲେ ନାହିଁ, ବରଂ ତାଙ୍କରିହିଁ ନେତୃତ୍ୱରେ ଏହି ନରମେଧ ଯଜ୍ଞ ଅନୁଷ୍ଠିତ ହେଲା । ଯୁଦ୍ଧ କିପରି ନ ହେବ ! ମହାମୁନିଙ୍କର ଭବିଷ୍ୟତବାଣୀ କିପରି କାର୍ଯ୍ୟରେ ପରିଣତ ନ ହେବ, ଏଥିପାଇଁ ଯୁଧିଷ୍ଠିର ବହୁ ନିର୍ଯ୍ୟାତନା ନିଜେ ସହିଛନ୍ତି ଏବଂ ନିଜର ଭାଇ ସ୍ତ୍ରୀଙ୍କୁ ଏଥିରେ ଅଂଶୀଦାର କରିଛନ୍ତି । ପଶାଖେଳରେ ସର୍ବସ୍ୱ ହରାଇଛନ୍ତି ଏବଂ ନିଜ ଧର୍ମପତ୍ନୀଙ୍କର କୁରୁସଭାରେ ବିବସନ ହେବାର ଦେଖିଛନ୍ତି । ବନବାସ ସମୟରେ ବନ୍ୟ ଫଳମୂଳ ଆହାର କରିଛନ୍ତି, ପର୍ଣ୍ଣକୁଟୀରରେ ନିଦ୍ରା ଯାଇଛନ୍ତି । ତଥାପି କିଛି ଫଳ ହେଲା ନାହିଁ, ଯାହା ଘଟିବାର କଥା ଘଟିଲା । ଯୁଦ୍ଧ କ୍ଷେତ୍ର ରକ୍ତରେ ଲାଲ ହୋଇଗଲା ।

ଯୁଦ୍ଧପ୍ରତି ଯୁଧିଷ୍ଠିରଙ୍କର ଘୋର ବିତୃଷ୍ଣା । କାହାର ରକ୍ତପାତ ସେ ଦେଖିପାରନ୍ତି ନାହିଁ । ସେଥିପାଇଁ ଏହା ଏଡ଼ାଇ ଦେବାକୁ ସେ ଆପ୍ରାଣ ଚେଷ୍ଟା କଲେ ମଧ୍ୟ ସଫଳ ହୋଇପାରିଲେ ନାହିଁ । ଅନ୍ୟମାନଙ୍କ କଥା କିଏ ପଚାରେ, ନିଜେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ।

ବ୍ୟକ୍ତି ଯେତେ ପଣ୍ଡିତ, ଜ୍ଞାନୀ, ସଚ୍ଚରିତ୍ର, ଅକ୍ରୋଧୀ ହୋଇଥାଉ ପଛକେ ବେଳେବେଳେ ପରିସ୍ଥିତିର ଚାପରେ ସେ ସାଧାରଣ ଲୋକଙ୍କ ପରି କାର୍ଯ୍ୟ କରିଥାଏ। ଯୁଧିଷ୍ଠିର ଓ ଅନ୍ୟ ଚାରି ଭାଇଙ୍କ ମଧ୍ୟରେ କିପରି ଘନିଷ୍ଠ ସମ୍ପର୍କ ଥିଲା ଏବଂ ଅନ୍ୟ ଚାରି ଭାଇ ଜ୍ୟେଷ୍ଠଙ୍କୁ କିପରି ପିତୃତୁଲ୍ୟ ଜ୍ଞାନ କରି ତାଙ୍କର ଆଦେଶ ପାଳନ କରୁଥିଲେ ତାହା ପୂର୍ବରୁ କୁହାଯାଇଛି। ମାତ୍ର ଯେତେବେଳେ କର୍ଣ୍ଣ କୌରବବାହିନୀର ମୁଖ୍ୟ ସେନାପତି ରୂପେ ଯୁଦ୍ଧ ପରିଚାଳନା କରୁଥିଲେ ସେତେବେଳେ ଏପରି ଏକ ପରିସ୍ଥିତିର ଉଦ୍ଭବ ହେଲା ଯଦ୍ୱାରା ଅର୍ଜୁନ ତାଙ୍କୁ ହତ୍ୟା କରିବା ପାଇଁ ଉଦ୍ୟତ ହୋଇଥିଲେ।

ସେଦିନ କର୍ଣ୍ଣଙ୍କ ସହିତ ଅର୍ଜୁନଙ୍କର ଯୁଦ୍ଧ ଚାଲିଥାଏ। କି ଭୀଷଣ ସେ ଯୁଦ୍ଧ! ହେଲେ କର୍ଣ୍ଣ ଅର୍ଜୁନଙ୍କର ସମକକ୍ଷ ହୋଇ ପାରୁନଥାନ୍ତି। ଅର୍ଜୁନଙ୍କର ତୀକ୍ଷ୍ଣ ବାଣରେ ତାଙ୍କର ରଥ ମଝେ ମଝେ ପଛକୁ ଘୁଞ୍ଚି ଯାଉଥାଏ। ଏଥିରେ କର୍ଣ୍ଣ ଅତ୍ୟନ୍ତ କ୍ରୁଦ୍ଧ ହୋଇ ନନ୍ଦିଘୋଷକୁ ଲକ୍ଷ୍ୟକରି ବଜ୍ରସମ ଏକ ବାଣ ମାରିଲେ। ଫଳରେ ରଥ ପଛକୁ ଘୁଞ୍ଚିଗଲା, ସମସ୍ତେ କର୍ଣ୍ଣଙ୍କୁ ଧନ୍ୟ ଧନ୍ୟ କଲେ। ସ୍ୱୟଂ ଶ୍ରୀକୃଷ୍ଣ ମଧ୍ୟ ସୂର୍ଯ୍ୟ ପୁତ୍ରଙ୍କର ବୀରତ୍ୱର ପ୍ରଶଂସା ନକରି ରହିପାରିଲେ ନାହିଁ। କୃଷ୍ଣଙ୍କ ମୁଖରେ କର୍ଣ୍ଣଙ୍କର ପ୍ରଶଂସା ଅର୍ଜୁନଙ୍କ ପ୍ରତି ଅସହ୍ୟ ହେଲା। ଲଜ୍ଜାରେ ଅପମାନରେ ତାଙ୍କର ମୁଖ ଲାଲ ପଡ଼ିଗଲା। ଅଭିମାନ ସ୍ୱରରେ ସେ କୃଷ୍ଣଙ୍କୁ କହିଥିଲେ ମୁଁ ସାତଥର କର୍ଣ୍ଣରଥ ପଛକୁ ଘୁଞ୍ଚାଇ ଦେଲି—କାହିଁ ଆପଣଙ୍କ ମୁହଁରୁ ପଦଟିଏ ପ୍ରଶଂସା ବାହାରିଲା ନାହିଁ। ଆଉ କର୍ଣ୍ଣ ମୋ ରଥକୁ ଥରେ ଘୁଞ୍ଚାଇ ଦେବାରୁ ତାର ଏତେ ପ୍ରଶଂସା ! କର୍ଣ୍ଣରଥ ତୁଳା ଗଦା ହେଲେ ନନ୍ଦିଘୋଷ ଅଚଳ ମେରୁ ସଦୃଶ। ଯେତେବେଳେ ଏ ରଥ ପଛକୁ ଘୁଞ୍ଚିଗଲା କର୍ଣ୍ଣ ନିଶ୍ଚିତ ଭାବରେ ପ୍ରଶଂସା ଯୋଗ୍ୟ କୃଷ୍ଣ ଏହି ସାନ୍ତ୍ୱନା ଦେଲେ। ଏଥିରେ ଅର୍ଜୁନଙ୍କ ମନ ବୁଝିଲା ନାହିଁ। ଅଭିମାନରେ ସେ ଧନୁ ଥୋଇଦେଇ ଟିକିଏ ବସି ପଡ଼ିଲେ।

ଏଣେ ଯୁଦ୍ଧ ଚାଲିଥାଏ। କର୍ଣ୍ଣ ଦେଖିଲେ ଅର୍ଜୁନ ନାହାନ୍ତି। କେଉଁଠାରେ ସେ ଅଛନ୍ତି। ଖୋଜୁ ଖୋଜୁ ହଠାତ୍ ଯୁଧିଷ୍ଠିର ତାଙ୍କ ସମ୍ମୁଖରେ ପଡ଼ିଗଲେ। ଦୁଇଜଣଙ୍କ ମଧ୍ୟରେ ଯୁଦ୍ଧ ଚାଲିଲା। କାହିଁ କର୍ଣ୍ଣ କାହିଁ ଯୁଧିଷ୍ଠିର। ତୀକ୍ଷ୍ଣବାଣ ମାରି କର୍ଣ୍ଣ ଯୁଧିଷ୍ଠିରଙ୍କୁ ନିରସ୍ତ୍ର କରିଦେଲେ-ତାଙ୍କର ରଥ ଧ୍ୱସ୍ତ ବିଧ୍ୱସ୍ତ କରିଦେଲେ। ଯୁଧିଷ୍ଠିର ଯେତେବେଳେ କ୍ଷହିସ୍ତ ପଦଗଢରେ ଯୁଦ୍ଧ ଆରମ୍ଭ କଲେ। କର୍ଣ୍ଣ ଅନ୍ୟ ଏପରି ଏକ ଶର ପ୍ରୟୋଗ କଲେ ଯାହା ପ୍ରତିହତ କରିବା ଯୁଧିଷ୍ଠିରଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ, ସେ ଅଚେତନ ହୋଇ ପଡ଼ିଗଲେ।

ଚେତା ଫେରିବା ପରେ ଦେଖନ୍ତି କର୍ଣ୍ଣ ବାମ ହାତରେ ତାଙ୍କର କେଶ ଗୁଚ୍ଛ ଧରିଛନ୍ତି। ଡାହାଣ ହାତରେ ଏକ ତୀକ୍ଷ୍ଣଧାର ଖଣ୍ଡା ଚକ୍ ଚକ୍ କରୁଛି। ଯୁଧିଷ୍ଠିରଙ୍କୁ

ନିରୁପାୟ ଦେଖି କର୍ଣ୍ଣ ତାଙ୍କ ପ୍ରତି ନାନା କଟୂକ୍ତି ପ୍ରୟୋଗ କଲେ । ଶେଷରେ କହିଲେ ତୋର ଇଷ୍ଟଦେବ ସ୍ମରଣ କର—ମୋ ହାତରୁ ତୋର ଆଜି ରକ୍ଷା ନାହିଁ ।

ଯୁଧିଷ୍ଠିର ଆଉ କଣ କରିବେ, ନିଜର ମାତା କୁନ୍ତୀଙ୍କ ନାମ ମୁଖରେ ଉଚ୍ଚାରଣ କଲେ ଏବଂ ଏହି ଚରମ ବିପଦରେ ତାଙ୍କର ସାହାପକ୍ଷ ହେବାପାଇଁ ଅତି ବିକଳ ହୋଇ ଅନୁରୋଧ ଜଣାଇଲେ । କୁନ୍ତୀଙ୍କର ନାମ ଶୁଣି କର୍ଣ୍ଣ ଚମକି ପଡ଼ିଲେ । ଆଉ ଯୁଧିଷ୍ଠିରଙ୍କର କେଶ ଛାଡ଼ିଦେଇ ରୁକ୍ଷସ୍ୱରରେ ଆଦେଶ ଦେଲେ ଏହି ମୁହୂର୍ତ୍ତିରେ ଏଠାରୁ ପଳା । ତୋର ଭାଗ୍ୟ ଭଲ ଯେ ମାତାଙ୍କ ନାମ ସ୍ମରଣ କଲୁ । ମାତାଙ୍କ ନିକଟରେ ମୋର ଦତ୍ତ ପ୍ରତିଜ୍ଞା ସ୍ମରଣ କରାଇଦେଲୁ ।

କର୍ଣ୍ଣଙ୍କର ମାତା କୁନ୍ତୀ । ଯୁଦ୍ଧ ଆରମ୍ଭ ହେବାର ଅବ୍ୟବହିତ ପୂର୍ବରୁ କର୍ଣ୍ଣଙ୍କୁ ପାଣ୍ଡବମାନଙ୍କ ପକ୍ଷ ସମର୍ଥନ କରିବା ପାଇଁ ସେ ଅନୁରୋଧ କରିଥିଲେ । ମାତ୍ର କର୍ଣ୍ଣ ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ । ପୁତ୍ରର ନାସ୍ତିବାଚ୍ୟରେ ମାତା ଦୁଃଖିତା ହେଲେ । ଫେରିବା ପୂର୍ବରୁ ସେ ପୁତ୍ରଙ୍କୁ ଅନ୍ୟ ଏକ ଅନୁରୋଧ ଜଣାଇଥିଲେ ଯେ ପାର୍ଥ ବ୍ୟତୀତ ଅନ୍ୟ ଚାରି ଭାଇଙ୍କୁ ସେ ମାରିବେ ନାହିଁ । କର୍ଣ୍ଣ ମାତାଙ୍କର ଏହି ଅନୁରୋଧ ରକ୍ଷା କରିଥିଲେ ।

ପୂର୍ବ ପ୍ରତିଶ୍ରୁତି ସ୍ମରଣ କରି ମାତାଙ୍କ ନାମ ଶୁଣିବାକ୍ଷଣି ସେ ଯୁଧିଷ୍ଠିରଙ୍କୁ ଛାଡ଼ିଦେଇଥିଲେ ।

ଅତୀତରେ ଭାଇମାନେ ତାଙ୍କ ପ୍ରତି ଯେ କଟୂକ୍ତି ପ୍ରୟୋଗ ନକରିଥିଲେ ତା ନୁହେଁ । ଯୁଧିଷ୍ଠିର ଅସାଧାରଣ ଧୈର୍ଯ୍ୟସହକାରେ ସେସବୁ ସହିଯାଇଥିଲେ । କ୍ରୋଧ କଣ, ଅଭିମାନ କଣ ସେ ଜାଣିନଥିଲେ ମାତ୍ର ଆଜି କର୍ଣ୍ଣଙ୍କର କଟୂକ୍ତି ଓ ଲାଞ୍ଛନାରେ ସେ ବିଚଳିତ ହୋଇ ଯୁଦ୍ଧକ୍ଷେତ୍ରରୁ ପଳାୟନକରି ଗୋଟିଏ ଘରେ ଲୁଚି ରହିଲେ ।

ଅର୍ଜୁନ ଏ ସମ୍ବାଦ ପାଇଲେ । ଭାଳେ ଅଭିମାନରେ ଭାଇ ଆତ୍ମହତ୍ୟା କରିଦେବେ ଏହି ଆଶଙ୍କା କରି ଶ୍ରୀକୃଷ୍ଣଙ୍କ ସହିତ ସେଠାରେ ଉପସ୍ଥିତ ହେଲେ ଓ ଦେଖିଲେ ଘରର ଦ୍ୱାର ଭିତରୁ ବନ୍ଦ ଅଛି । ଦୁଆର ଖୋଲିବା ପାଇଁ କୃଷ୍ଣ ବିନୟରେ ସହିତ ବହୁତ ଡାକିଲେ ଦୁଆର ଖୋଲିଲା ନାହିଁ । କୃଷ୍ଣ କଣ ଛାଡ଼ିବାର ପାତ୍ର ! ବୁଝାଇ ଶୁଝାଇ ଡାକୁଥାନ୍ତି । କେତେବେଳକୁ ଦୁଆର ଖୋଲିଲା । ଯୁଧିଷ୍ଠିର ଭିତରୁ ବାହାରିଲେ ।

ଅର୍ଜୁନଙ୍କ ଉପରେ ଆଖି ପଡ଼ିବାକ୍ଷଣି ସଦା ଅକ୍ରୋଧୀ ଯୁଧିଷ୍ଠିର କ୍ରୋଧରେ ନିଆଁ ବାଣ ହୋଇଗଲେ । ଯେ ମିଷ୍ଟଭାଷୀ ତାଙ୍କ ମୁଖରୁ ବାହାରି ଆସିଲା ଭର୍ତ୍ସନାର ସ୍ରୋତ । ସେ କହି ଚାଲିଲେ, ତୋ ପରି ଭାଇ ଥାଇଁ ଥାଇଁ ଜୀବନର ମୋତେ ଏତେ ଲାଞ୍ଛନା ଭୋଗ କରିବାକୁ ହେବ ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । କର୍ଣ୍ଣ ମୋତେ ଆଜି ଯେଉଁ ଅପମାନ ଦେଇଛି ମୁଁ ଜୀବନରେ ଭୁଲିବି ନାହିଁ । କେବଳ ମାତାଙ୍କ ନାମ ସ୍ମରଣରେ ମୁଁ

ବଞ୍ଚିଗଲ୍ । ତା ନ ହେଲେ ଏତେବେଳକୁ ମୁଁ ଅର ପୁରରେ ଥାନ୍ତି । ଧିକ ତୋର ବୀରପଣ ! ଶତଧିକ ତୋର ବୀରତ୍ୱକୁ । ତୋର ବଣନାମ ଧରିବା ବୃଥା । ତୋର ଦେବଦତ୍ତ ଶଙ୍ଖକୁ ଧିକ୍ ! ଧିକ୍ ତୋର ଗାଣ୍ଡିବ ଧନୁକୁ ! ଧିକ୍ ତୋର ପାଶୁପତ ଅସ୍ତ୍ର ଓ ଶତାଧିକ ତୋର ଅକ୍ଷୟ ତୂଣୀକୁ । କିଏ ଯେ ତୋତେ କିରୀଟୀ ନାମ ଦେଲା ମୁଁ ବୁଝି ପାରୁ ନାହିଁ । ଧିକ୍ ତୋର ନନ୍ଦିଘୋଷ ରଥ ଆଉ ଧିକ୍ ତୋର କପିକେତନ ।

ଅର୍ଜୁନ କ୍ରମ୍ଭୀଭୂତ, କୃଷ୍ଣ ଅବାକ୍ । ଅଜାତ ଶତ୍ରୁ ଯୁଧିଷ୍ଠିର ଏପରି ନିଷ୍ଠୁର ବାକ୍ୟ ପ୍ରୟୋଗ କରିପାରନ୍ତି ଏହା ସେ ଦୁହେଁ ଭାବିପାରିଲେ ନାହିଁ । ଯୁଧିଷ୍ଠିରଙ୍କର ଏହି ଧିକ୍କାର ବଚନ ଅର୍ଜୁନଙ୍କୁ ଯେତେ ନ ବାଧିଲା, ବେଶୀ ବାଧିଲା ପାଶୁପତ ଅସ୍ତ୍ର ଓ ଅକ୍ଷୟ ତୂଣୀର ନିନ୍ଦା । ସେ ଆଉ ସମ୍ଭାଳି ପାରିଲେ ନାହିଁ । ଖଡ୍ଗଧରି ଯୁଧିଷ୍ଠିରଙ୍କୁ ହତ୍ୟା କରିବା ପାଇଁ ଆଗେଇ ଆସିଲେ । କୃଷ୍ଣ ତାଙ୍କର ହାତ ଧରି ପକାଇ କହିଲେ ରହ ରହ ପାର୍ଥ । ତୁମେ କଣ କରିବାକୁ ଯାଉଛ ? କାହା ଉପରେ ଏତେ ରାଗ ? ସେ ପରା ତୁମର ଜ୍ୟେଷ୍ଠ ଭ୍ରାତା, ପିତୃସମ । ଅର୍ଜୁନ କହିଲେ, ଶିବଗୌରୀ ଯେତେବେଳେ ମୋ ଉପରେ ସନ୍ତୁଷ୍ଟ ହୋଇ ପାଶୁପତ ଅସ୍ତ୍ର ଓ ଅକ୍ଷୟ ତୂଣୀର ଦେଇଥିଲେ । ମୁଁ ପ୍ରତିଜ୍ଞା କରିଥିଲି ଯିଏ ଏହି ଅସ୍ତ୍ରକୁ ନିନ୍ଦା କରିବ ମୁଁ ତାର ଶିରଚ୍ଛେଦ କରିବି । ଯଦି ନ କରିପାରେ ତେବେ ନିଜେ ଅଗ୍ନିରେ ଦଗ୍ଧ ହୋଇ ମରିବି । ଏହି ଦୁଇ କଥାରୁ କଥାଏ ନ ହେଲେ ସାଙ୍ଗେ ସାଙ୍ଗେ ଏହି ଅସ୍ତ୍ର ମୋ ଠାରୁ ଚାଲିଯିବ ।

କହନ୍ତୁ ଏ ସମସ୍ୟାର ସମାଧାନ କପରି ହେବ ?

'ସବୁ ହେବ, ମୁଁ ତାର ଉପାୟ କରୁଛି । ହସି ହସି କୃଷ୍ଣ ଉତ୍ତର ଦେଲେ । ତା' ପରେ କୃଷ୍ଣ ଶିବଗୌରୀଙ୍କୁ ସ୍ତୁତି କରି କହିଲେ । ଯୁଧିଷ୍ଠିର କ୍ରୋଧରେ ଆପଣଙ୍କ ପ୍ରଦତ୍ତ ଅସ୍ତ୍ରକୁ ନିନ୍ଦା କରିବାରୁ ଅର୍ଜୁନ ସେସବୁ ତ୍ୟାଗ କରିଛନ୍ତି । ସେସବୁ ତାଙ୍କୁ ପୁନର୍ବାର ମିଳୁ । ଏହାହିଁ ମୋର ପ୍ରାର୍ଥନା । କୃଷ୍ଣଙ୍କର ପ୍ରାର୍ଥନା କୈଳାସରେ ପହଞ୍ଚିଲା—ସନ୍ତୁଷ୍ଟ ହୋଇ ସେ ଆଦେଶ କଲେ 'ଅରେ ଶର, ତୂଣୀରୁ ଏଠାକୁ ଆସିବା ଦରକାର ନାହିଁ । ପାର୍ଥ ପାଖରେ ରହିଥାଅ' ଶର ତୂଣୀରୁ ଚାଲି ଯାଉଥିଲେ । ଶିବଙ୍କର ଆଦେଶରେ ପୁଣି ଅର୍ଜୁନଙ୍କ ପାଖକୁ ଚାଲି ଆସିଲେ ।

ପରିସ୍ଥିତିର ଚାପରେ କପରି ଅସମ୍ଭବ ସମ୍ଭବ ହୁଏ ତାହା ଦର୍ଶାଇବା ଏହି ଉପାଖ୍ୟାନର ଉଦ୍ଦେଶ୍ୟ ।

## ଯୁଦ୍ଧପରେ

କୁରୁକ୍ଷେତ୍ର ଯୁଦ୍ଧ ଶେଷ ହେଲା । ଦୁର୍ଯ୍ୟୋଧନ ଶତଭାଇ ନିହତ ହେଲେ । ଦ୍ୱାଦଶ ଯୋଜନ ପର୍ଯ୍ୟନ୍ତ ରଣକ୍ଷେତ୍ର ମୃତଦେହରେ ପୂର୍ଣ୍ଣ ହୋଇଗଲା । ହସ୍ତିନାପୁର ବିଧବା

ମାନଙ୍କର ବିକଳ କନ୍ଦନଧ୍ୱନିରେ ନିନାଦିତ ହେଲା । ଧୃତରାଷ୍ଟ୍ର, ଗାନ୍ଧାରୀ ପୁତ୍ରଶୋକରେ ମୁହ୍ୟମାନ ହୋଇପଡ଼ିଲେ ।

ସର୍ବଜ ବିଷାଦର ଛାୟା

ଏପରି ପରିସ୍ଥିତିରେ ଯୁଧିଷ୍ଠିରଙ୍କର ମନରେ ଯେଉଁ ବିଷାଦ ଭାବ ଜାତହେଲା ତାହା ବର୍ଣ୍ଣନା ଅତୀତ । ସେ ଯୁଦ୍ଧରେ ଜୟ କରିଛନ୍ତି । ତାଙ୍କର ଚିର ଶତ୍ରୁ ଦୁର୍ଯ୍ୟୋଧନ ଦୁଃଶାସନ ନିହତ । ରାଜ୍ୟ ନିଷ୍କଣ୍ଟକ । ତଥାପି ଯୁଧିଷ୍ଠିରଙ୍କ ମନରେ ସୁଖ ନାହିଁ । ଏହି ଉଭ୍ରାନ୍ତ ସମର ଏଡ଼ାଇବା ପାଇଁ ମହାମୁନି ବେଦବ୍ୟାସଙ୍କର ଭବିଷ୍ୟତ ବାଣୀ ପରି କରିବା ଉଦ୍ଦେଶ୍ୟରେ ସେ ଭାଇମାନଙ୍କ ସହିତ ଅବଶ୍ୟ ଦୁଃଖ କଷ୍ଟ ଭୋଗ କଲେ; କିନ୍ତୁ କିଛି ଫଳ ହେଲ ନାହିଁ । ତାଙ୍କର ଯୋଗୁ ଏହି ନରମେଧ ଯଜ୍ଞ ଅନୁଷ୍ଠିତ ହୋଇଗଲା ।

ବିଜୟୀ ପାଣ୍ଡବ ପାଞ୍ଚଭାଇ ହସ୍ତିନାପୁରରେ ପ୍ରବେଶ କରିବାପରେ ଧୃତରାଷ୍ଟ୍ରଙ୍କୁ ସନ୍ତୋଷ ଅପିବା ପାଇଁ ଯୁଧିଷ୍ଠିରଙ୍କର ଇଚ୍ଛା ହେଲା । ଧୃତରାଷ୍ଟ୍ର ନିଜ ପୁତ୍ର ଦୁର୍ଯ୍ୟୋଧନଙ୍କର ଦୃଢ଼ ସମର୍ଥକ । ତାଙ୍କର ଯୋଗୁଁ ସେମାନେ ବହୁ ଯାତନା ସହ୍ୟ କରିଛନ୍ତି । ତଥାପି ଧୃତରାଷ୍ଟ୍ରଙ୍କ ପ୍ରତି ତାଙ୍କର ଆଦୌ ଦ୍ୱେଷ ଭାବ ନଥାଏ । ପିଏ ଆଜି ପର୍ଯ୍ୟନ୍ତ ପିତୃଙ୍କରେ ତାଙ୍କର ସମସ୍ତ ଆଦେଶ ପାଳନ କରିଛନ୍ତି ଆଜି ଏହି ଦାରୁଣ ଦୁର୍ବିପାକ ସମୟରେ ତାଙ୍କୁ ଦେଖା କରିବା ଯୁଧିଷ୍ଠିର ସମିଚୀନ ମନେ କଲେ । ଭାଇମାନେ ମଧ୍ୟ ଏଥିରେ ଏକମତ ହେଲେ । କୃଷ୍ଣ ମଧ୍ୟ ସେମାନଙ୍କ ସହିତ ଯିବାକୁ ଇଚ୍ଛା ପ୍ରକାଶ କଲେ ।

ପାଞ୍ଚ ଭାଇ ଓ ଶ୍ରୀକୃଷ୍ଣ ଧୃତରାଷ୍ଟ୍ରଙ୍କର ପ୍ରାସାଦଦ୍ୱାରରେ ଉପସ୍ଥିତ ହେବାର ଦେଖି ଏବଂ ସେମାନଙ୍କର ଆଗମନର ଉଦ୍ଦେଶ୍ୟ ଜାଣିବାପରେ ବିଦୁର ଏହି ଖବର ରାଜାଙ୍କୁ ଜଣାଇଲେ । ବିଦୁରଙ୍କ ଠାରୁ ଏ ସମ୍ବାଦ ଶୁଣି ରାଜା ତାଙ୍କର ତୀବ୍ର ବିରକ୍ତି ପ୍ରକାଶ କରି କହିଲେ, କଣ ମୋତେ ପୁତ୍ରକଷ୍ଟ ସ୍ମରଣ କରାଇଦେବାପାଇଁ ସେମାନେ ଆସିଛନ୍ତି । ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କ ସହ ମିଳି ନ କରିଛନ୍ତି କଣ ? କର୍ଣ୍ଣ, ଶଲ୍ୟ, ଭୂରିଶ୍ରବା, ଭୀଷ୍ମ, ଦ୍ରୋଣଙ୍କ ସହିତ ମୋର ଶତ ପୁତ୍ରଙ୍କୁ ମାରିଛନ୍ତି । ସେମାନେ ଆଉ ମୋର କଣ ଦେଖିବାକୁ ଆସିଛନ୍ତି । ସେମାନେ ଅତି ନିଷ୍ଠୁର । ବର୍ତ୍ତମାନ ନିଷ୍କଣ୍ଟକ ରାଜ୍ୟ ଭୋଗ କରନ୍ତୁ । ଏହା ଶୁଣି ବିଦୁର ତାଙ୍କୁ ଅତି ବିନୟର ସହିତ ବୁଝାଇ ଦେଲେ ଯେ ଏଥିରେ ପାଣ୍ଡବମାନଙ୍କର ବା ଶ୍ରୀକୃଷ୍ଣଙ୍କର ତିଳାର୍ଦ୍ଧ ଦୋଷ ନାହିଁ । ସବୁ ଦୋଷ ତୁମର । ତୁମେ ନିଜେ ତୁମର ପୁତ୍ରର ଅନ୍ୟାୟ କାର୍ଯ୍ୟର ପ୍ରତିରୋଧ କରିପାରିଲ ନାହିଁ । ଶେଷକୁ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ପାଇଁ ପାଞ୍ଚଖଣ୍ଡି ମାତ୍ର ଗ୍ରାମ ମାଗିଲେ । ତାହା ଦେବାମଧ୍ୟ ଦୁର୍ଯ୍ୟୋଧନଙ୍କ ଯୋଗୁଁ ସମ୍ଭବ ହେଲ ନାହିଁ । ଯୁଦ୍ଧ ଛଡ଼ା ଆଉ କଣ ଉପାୟ ଥିଲା । ଯୁଦ୍ଧର ଫଳାଫଳ ତ କେହି କହିପାରିବେ ନାହିଁ । ଯାହା ଘଟିବାର ଘଟିଲା ? ଏଥିରେ ପାଣ୍ଡବମାନଙ୍କୁ ଦୋଷ ଦେଇ

ଲାଭ କଣ ? ବରଂ ଏବେ ଅନୁରୋଧ ରକ୍ଷାକରନ୍ତୁ । ପାଣ୍ଡବମାନଙ୍କୁ ଗ୍ରହି ପୁତ୍ରଜଷ୍ଟ ପାସୋର ଦଅନ୍ତୁ ।

ଧୃତରାଷ୍ଟ୍ର ବିଦୁରଙ୍କର ଅନୁରୋଧ ରକ୍ଷାକଲେ । ଯୁଧିଷ୍ଠିର ଭାଇମାନଙ୍କ ସହିତ ରାଜା ଓ ରାଣୀଙ୍କର ଚରଣ ବନ୍ଦନା କଲେ । ପାଣ୍ଡବମାନଙ୍କୁ ଦେଖି ପୁତ୍ରଶୋକରେ ସେ ଅସ୍ଥିର ହୋଇପଡ଼ିଲେ । ଭୋ ଭୋ ଡକା ପକାଇ କାନ୍ଦିଲେ ।

ସଞ୍ଜୟ ତାଙ୍କର ମନ୍ତ୍ରୀ । ରାଜାଙ୍କର ଏପରି ଅବସ୍ଥା ଦେଖି ସେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ; ସୁଖ, ଦୁଃଖ, ଜୀଇଁବା, ମରିବା କର୍ମଫଳ । ଏଥିପାଇଁ ବ୍ୟସ୍ତହେବା ଅନାବଶ୍ୟକ । ଏହିପରି ଅନେକ ବୁଝାଇବା ପରେ ରାଜା ଶାନ୍ତ ହେଲେ ।

ଧୃତରାଷ୍ଟ୍ରଙ୍କ ନିକଟରୁ ଫେରିବା ପରେ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ରାଜପଦରେ ଅଭିଷେକ ଉତ୍ସବର ଆୟୋଜନ କଲେ । ଯୁଧିଷ୍ଠିରଙ୍କର ଗୁରୁଜନ ମାନଙ୍କ ଠାରେ ଅଚଳା ଭକ୍ତି । ତାଙ୍କର ଅଭିଷେକ ଆୟୋଜନ ଦେଖି ସେ କହିଲେ, ପିତାମହ ଭୀଷ୍ମ ବର୍ତ୍ତମାନ ଶରଶଯ୍ୟାରେ । ଅଭିଷେକ ପୂର୍ବରୁ ତାଙ୍କର ଅନୁମତି ଓ ଆଶୀର୍ବାଦ ଏକାନ୍ତ ପ୍ରୟୋଜନ ।

ତାପରେ ଯୁଧିଷ୍ଠିର ନିଜ ଭାଇ ଓ କୃଷ୍ଣଙ୍କ ସହିତ ଭୀଷ୍ମଙ୍କ ନିକଟରେ ଉପସ୍ଥିତ ହେଲେ । ସେତେବେଳକୁ ପିତାମହ ମୌନରେ ପଡିରହିଥାନ୍ତି । ଚକ୍ଷୁ ଦୁଇଟି ବନ୍ଦ । ନିକଟରେ ପଦ ଶବ୍ଦ ଶୁଣି ସେ ଆଖି ଖୋଲନ୍ତି ତ ତାଙ୍କ ନିକଟରେ ତାଙ୍କର ପ୍ରିୟ ପାଞ୍ଚଭାଇ ଓ ଶ୍ରୀକୃଷ୍ଣ ଉପସ୍ଥିତ ।

ନିମୀଳିତ ଚକ୍ଷୁ ଉନ୍ମୋଚିତ ହେଲା । ଶୁଷ୍କ ମୁଖମଣ୍ଡଳରେ ପ୍ରୀତିହାସ୍ୟ ଦେଖାଦେଲା । ବୃଦ୍ଧ ଅତି ଧୀର ଓ ଗମ୍ଭୀର ସ୍ୱରରେ ଯୁଧିଷ୍ଠିରଙ୍କୁ କହିଲେ, ବାବୁ, ମହାଭାରତ ଯୁଦ୍ଧ ଶେଷ ହୋଇଛି । ବିଜୟଲକ୍ଷ୍ମୀ ତୁମ ନିକଟରେ । ଯାଅ ନିଷ୍କଣ୍ଟକ ରାଜ୍ୟ ଭୋଗକର । ମୁଁ ଆଶୀର୍ବାଦ କରୁଛି, ରାଜ୍ୟଶାସନରେ ତୋର କୌଣସି ଅସୁବିଧା ହେବ ନାହିଁ । ପୁଣି ଶ୍ରୀକୃଷ୍ଣ ଯାହାର ସଖା ତାର କଣ କୌଣସି ଅମଙ୍ଗଳ ହୋଇପାରେ । ତେବେ ମୋର ଗୋଟିଏ ଉପଦେଶ ମାନି ଚଳୁଥିବୁ । ତାହା ହେଉଛି—ଧର୍ମ ପ୍ରତିପାଳନ । ଅଧର୍ମ କଲେ ବସୁଧା ସହିବ ନାହିଁ । ପ୍ରଜାମାନଙ୍କ ପାଇଁ ରାଜା । ସେମାନଙ୍କର ସୁଖରେ ରାଜା ସୁଖୀ ହୋଇଥାନ୍ତି । ଏହା ସବୁବେଳେ ମନେ ରଖିଥିବୁ । ସାଧାରଣତଃ ଶାସକମାନେ ଅନେକ ସମୟରେ ବିଗ୍ରହଣ ଭାବରେ ନିର୍ଦ୍ଦୋଷଙ୍କୁ ଦଣ୍ଡବିଧାନ କରିଥାନ୍ତି । ଏହା ରାଜାଙ୍କ ପକ୍ଷରେ ଅଶୁଭ ସଙ୍କେତ । ଦୋଷୀ ନିର୍ଦ୍ଦୋଷ ଖୁବ୍ ଧୀର ସ୍ଥିରଭାବରେ ବିଗ୍ରହର ଦଣ୍ଡ-ଦେଉଥିବୁ । ଦୋଷୀ ସର୍ବଥା ଦଣ୍ଡନୀୟ । ତାହାକୁ ଦଣ୍ଡଦେଲେ ଲକ୍ଷ୍ମୀ ବରଦାୟକ ହୋଇଥାଆନ୍ତି ।

ଆଉ ଗୋଟିଏ କଥା । ପ୍ରଜାମାନେ କେତେ କରଦେବେ ତାହା ଗମ୍ଭୀର ଭାବରେ ଆଲୋଚନା କରି ସ୍ଥିର କରିବୁ । ଉଚ୍ଚକୁ ପାଣିଟଣା ଯେପରି ଜଳ ଶୁଖିଯାଏ, ସେହିପରି ଅତ୍ୟଧିକ କର ସେମାନଙ୍କଠାରୁ ଆଦାୟ କଲେ ବିଷମ ପରିସ୍ଥିତି ଉପୁଜେ । ପ୍ରଜାମାନେ ଲୁହ ନ କାନ୍ଦି ରକ୍ତ କାନ୍ଦନ୍ତି । ସେଥିରେ ରାଜାଙ୍କର ସବୁ ବୈଭବ ପ୍ରଚଣ୍ଡ ଅଗ୍ନିରେ ତୃଣ ସଦୃଶ ଜଳିଯାଏ । ରାଜ୍ୟ ଶ୍ମଶାନ ହୋଇପଡ଼େ । ଆଉ ଗୋଟିଏ କଥା ମନେରଖିଥିବୁ । କୃଷକ ରାଜ୍ୟର ମେରୁଦଣ୍ଡ । ବୈଶାଖ ଖରା, ଶ୍ରାବଣରେ ଧାରା ଓ ପୌଷ ମାସର ହାଡ଼ଭଙ୍ଗା ଶୀତ ସହି ସେମାନେ ଶସ୍ୟ ଉପୁଜାନ୍ତି । ମନୁଷ୍ୟର ଦାନା ଦନା ସେମାନଙ୍କ ଉପରେ ନିର୍ଭର କରେ । ତେଣୁ କୃଷିଜୀବୀଙ୍କୁ କେବେହେଲେ ଅର୍ଥଦଣ୍ଡରେ ଦଣ୍ଡିତ କରିବୁ ନାହିଁ ।

ଏହିପରି ରାଜ୍ୟ ଶାସନ ବିଷୟରେ ବହୁ ମୂଲ୍ୟବାନ ଉପଦେଶ ପରେ ଭୀଷ୍ମ ଶ୍ରୀକୃଷ୍ଣଙ୍କ ମୁହଁକୁ ଅପଲକ ନୟନରେ ଚାହିଁଲେ । ତାପରେ ହା କୃଷ୍ଣ କହି ଶେଷ ନିଃଶ୍ୱାସ ତ୍ୟାଗ କଲେ । ଏହିପରି ଜଣେ ମହାମାନବଙ୍କର ଦେହାବସାନ ଘଟିଲା ।

ଏହାପରେ ପାଣ୍ଡବ ପାଞ୍ଚଭାଇ ଭୀଷ୍ମଦେବଙ୍କର ଏହି ମର କଳେବରର ଯଥାବିଧି ସତ୍କାର କରି ପ୍ରେତକୃତ୍ୟ ଶେଷ କଲେ । ଯୁଧିଷ୍ଠିରଙ୍କ ମନରେ ଆନନ୍ଦ ଓ ଶାନ୍ତିର ତରଙ୍ଗ ଉଠୁଥାଏ । ପିତାମହଙ୍କର ଶେଷକୃତ୍ୟ ସମ୍ପନ୍ନ କରିବାର ସୁଯୋଗ ଯେ ସେ ପାଇଲେ ଏଥିପାଇଁ ଏତେ ଆନନ୍ଦ, ଏତେ ତୃପ୍ତି ।

ଭୀଷ୍ମଙ୍କର ଶେଷକୃତ୍ୟ ଶେଷ କରିବା ପରେ ପାଣ୍ଡବ ମାନେ ପୁନର୍ବାର ଧୃତରାଷ୍ଟ୍ରଙ୍କ ନିକଟରେ ଉପସ୍ଥିତ ହେଲେ । ସେମାନଙ୍କୁ ଦେଖି ଗାନ୍ଧାରୀ କହିଲେ ସବୁତ କଲ, ମୋ ପୁଅମାନଙ୍କର ସତ୍କାର କରିବ ନାହିଁ । ଏହା କହୁ କହୁ ତାଙ୍କ ମାତୃ ହୃଦୟରେ ପ୍ରବଳ କୋହ ଉଠିଲା । ସେ କୋହ ରୋକିବ କିଏ ? ଝରଣାର ସ୍ୱଚ୍ଛନ୍ଦ ପ୍ରବାହକୁ ରୋକିବାର ଶକ୍ତି କାହାର !

ଗାନ୍ଧାରୀଙ୍କୁ ସାନ୍ତ୍ୱନା ଦେଇ ଯୁଧିଷ୍ଠିର କହିଲେ, ମା ଆମ୍ଭେମାନେ କଣ ତୁମର ପୁଅ ନୋହୁଁ, ଧୃତରାଷ୍ଟ୍ର କଣ ଆମର ପିତା ନୁହନ୍ତି ? ତୁମର ପୁତ୍ରମାନେ କଣ ଆମର ଭାଇ ନୁହନ୍ତି । ସମସ୍ତଙ୍କର ଯଥାବିଧି ସତ୍କାର ଆମ୍ଭେମାନେ ନିଶ୍ଚିତଭାବରେ କରିବୁ । ଆପଣ ଶାନ୍ତ ହୁଅନ୍ତୁ ।

ଯୁଧିଷ୍ଠିରଙ୍କର ଏହି ଅମୀୟବାଣୀ ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କର ଦଗ୍ଧ ହୃଦୟରେ ଯେପରି ଚନ୍ଦନ ବୋଳିଦେଲା । ସେମାନେ ଆନନ୍ଦରେ ଗଦ୍ଗଦ୍ ହୋଇ କହିଲେ, ବାବୁ, ତୋର କଥା କେଡ଼େ ମଧୁର । ତାହା ଶୁଣି ଆମେ ଦୁଇ ପ୍ରାଣୀ ପୁତ୍ରକଷ୍ଟ ପାସୋରି ପକାଇଲୁଣି । ଆଶୀର୍ବାଦ କରୁଛୁ, ଆମର ଆୟୁଷ ଯେନ ତୁମେ ନିଷ୍କଣ୍ଟକ ରାଜ୍ୟ ଭୋଗକର ।

ପ୍ରେତକୃତ୍ୟ ଯଥାବିଧି ସମାପ୍ତ ହେବାପରେ ବହୁ ମୁନିଋଷି ବ୍ରାହ୍ମଣଙ୍କର ଉପସ୍ଥିତିରେ ଯୁଧିଷ୍ଠିରଙ୍କର ଅଭିଷେକ ଉତ୍ସବ ସମାପ୍ତ ହେଲା ।

କାମନା ପୂରଣ ପାଇଁ ମନୁଷ୍ୟ ସାଧାରଣତଃ ଚେଷ୍ଟାକରେ । ଯେ ପର୍ଯ୍ୟନ୍ତ ତାହା ପୂରଣ ନହୋଇଛି ସେ ପର୍ଯ୍ୟନ୍ତ ତାର ଚେଷ୍ଟା ଅବ୍ୟାହତ ରହିଥାଏ । ଶେଷରେ ତାହାର କାମନା ପୂରଣ ହୁଏ । ତଜ୍ଜନିତ ଆନନ୍ଦ ସେ ଖୁବ୍ ଅଳ୍ପ ସମୟ ପାଇଁ ଅନୁଭବ କରେ । ତା'ପରେ ପୁଣି ଅନ୍ୟ କାମନା ତାର ଚିନ୍ତାରାଜ୍ୟରେ ପ୍ରବେଶ କରେ ଏବଂ ତାହାର ପୂରଣ ପାଇଁ ସେ ପ୍ରଧାବିତ ହୁଏ । ଏହିପରି କାମନାମରୀଚିକା ପଛରେ ଦୌଡ଼ି ଦୌଡ଼ି ତାର ଜୀବନ ଅବସାନ ହୁଏ । ସ୍ଥାୟୀ ସୁଖ ବା ସନ୍ତୋଷ ସେ ଲାଭ କରିପାରେ ନାହିଁ ।

ବର୍ତ୍ତମାନ ଯୁଧିଷ୍ଠିର ଓ ଭାଇମାନଙ୍କର ସେହି ଅବସ୍ଥା । ସେମାନେ ଭାବିଥିଲେ ଯୁଦ୍ଧରେ ଦୁର୍ଯ୍ୟୋଧନ ଓ ତାଙ୍କର ଭାଇମାନଙ୍କୁ ସମୂଳେ ବିନାଶ କରି ରାଜ୍ୟ ଭୋଗ କରିବେ । ଶାନ୍ତି ଓ ଆନନ୍ଦ ପାଇବେ ମାତ୍ର ତାହା ହେଲା ନାହିଁ । କୁରୁକ୍ଷେତ୍ର ଯୁଦ୍ଧର ଆରମ୍ଭର ପ୍ରାକ୍କାଳରେ ଅର୍ଜୁନ ଠିକ ଅନୁଭବ କରିଥିଲେ ଯେ ନିଜର ଭାଇ ବନ୍ଧୁ କୁଟୁମ୍ବ ବିନାଶ କରିବାପରେ ଯେଉଁ ରାଜ୍ୟ ପ୍ରାପ୍ତି ହେବ ତାହା ସୁଖକର ହେବ ନାହିଁ ବା ସେଥିରୁ ଶାନ୍ତି ମିଳିବ ନାହିଁ । ଏହା ଶୁଣି ଶ୍ରୀକୃଷ୍ଣ ତାଙ୍କୁ କ୍ଷତ୍ରିୟର କର୍ତ୍ତବ୍ୟ ବିଷୟରେ ନାନା ଉପଦେଶ ଦେଇ ତାଙ୍କୁ ଯୁଦ୍ଧରେ ପ୍ରବୃତ୍ତ କରାଇଲେ ସତ, ମାତ୍ର ଅର୍ଜୁନ ଯେଉଁ ପ୍ରସଙ୍ଗ ଉତ୍ଥାପନ କରିଥିଲେ ତାହାର ଗୁରୁତ୍ୱ ଅସ୍ୱୀକାର କରାଯାଇ ନ ପାରେ ।

ଯୁଧିଷ୍ଠିର ରାଜାହେଲେ ସତ, ମାତ୍ର ତାଙ୍କ ମନରେ ସୁଖ ନ ଥାଏ । ମନରେ ଶାନ୍ତି ପାଇବା ପାଇଁ ସେ ରାଜା ଧୃତରାଷ୍ଟ୍ରଙ୍କୁ ପିତା ସଦୃଶ ସମ୍ମାନ ଦେଖାଉ ଥାନ୍ତି । ରାଜ୍ୟଶାସନ ସମ୍ପର୍କୀୟ ଗୁରୁତ୍ୱପୂର୍ଣ୍ଣ ବିଷୟରେ ସେ ତାଙ୍କର ବିନା ପରାମର୍ଶରେ କୌଣସି ନିଷ୍ପତ୍ତି ଗ୍ରହଣ କରୁ ନ ଥିଲେ । କାଳେ ଭାଇମାନେ ରାଜାଙ୍କ ପ୍ରତି କୌଣସି ଅସମ୍ମାନଜନକ ବ୍ୟବହାର କରିବେ ଏଥିପାଇଁ ସେ ସତର୍କ ଦୃଷ୍ଟି ରଖିଥାନ୍ତି । ବୃଦ୍ଧ ରାଜାଙ୍କର ଖାଇବା ପିଇବାରେ ପୂର୍ଣ୍ଣ ଯତ୍ନ ନେବାପାଇଁ ସେ ଅନୁଚରମାନଙ୍କୁ ତାଗିଦ୍ କରିଦେଇଥାନ୍ତି । ଯେଉଁମାନେ ଦୁଃଖୀ ସେମାନଙ୍କ ମନରେ ଟିକିଏ କଷ୍ଟ ଦେଲେ ତାହା କଟା ଘାରେ ଲୁଣ ଦେଲାପରି ହୁଏ । ଧୃତରାଷ୍ଟ୍ର ପୁତ୍ରହରା । ତାଙ୍କର ଶତ ପୁତ୍ର ଯୁଦ୍ଧରେ ନିହତ ହୋଇଛନ୍ତି । ଏହି ପୁତ୍ର ଶୋକ ସେ ଯେପରି ଭୁଲିଯିବେ ଏଦିଗରେ ଯୁଧିଷ୍ଠିର ସଦା ଯତ୍ନଶୀଳ ଥାନ୍ତି ।

ନିଜ ମନକୁ ଭୁଲେଇବାପାଇଁ ଓ ଶାନ୍ତିଲାଭ କରିବା ଉଦ୍ଦେଶ୍ୟରେ ଯୁଧିଷ୍ଠିର ଯେତେ ଚେଷ୍ଟାକଲେ ମଧ୍ୟ ତାଙ୍କର ହୃଦୟାକାଶ ଜ୍ଞାତିକୁଟୁମ୍ବଙ୍କ ହତ୍ୟାଜନିତ ବିଷାଦ ଘନରେ ସଦା ଆବୃତ ଥାଏ । ଧୌମ୍ୟ ତାଙ୍କର କୁଳ ପୁରୋହିତ । ଯୁଧିଷ୍ଠିରଙ୍କର ଏତାଦୃଶ ମାନସିକ ଅବସ୍ଥା ଲକ୍ଷ୍ୟ କରି ସେ ତାଙ୍କୁ ଅଶ୍ୱମେଧ ଯଜ୍ଞ କରିବାକୁ ପରାମର୍ଶ ଦେଲେ ।

ବଶିଷ୍ଠ ମଧ୍ୟ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, ରାଜସୂୟ ଯଜ୍ଞ ଅନୁଷ୍ଠାନ କରିବାଦ୍ୱାରା ସେ ତାଙ୍କର ପିତାଙ୍କର ମୁକ୍ତ ବାଟ ସୁଗମ କରିଦେଇଥିଲେ, ବର୍ତ୍ତମାନ ସେ ଯଦି ଅଶ୍ୱମେଧ ଯଜ୍ଞ କରନ୍ତି ତେବେ ଯୁଦ୍ଧରେ ନିହତ ତାଙ୍କର ଜ୍ଞାତି ବନ୍ଧୁମାନଙ୍କର ଯେ କେବଳ ମୁକ୍ତ ହେବ ତା ନୁହେଁ ତାଙ୍କ ମନରେ ଶାନ୍ତି ଓ ସନ୍ତୋଷ ଆସିବ । ହୃଦୟରୁ ସମସ୍ତ କଳୁଷ ଦୂର ହେବ ।

ଧୌମ୍ୟ ଓ ବଶିଷ୍ଠଙ୍କ ପରାମର୍ଶକ୍ରମେ ଅଶ୍ୱମେଧ ଯଜ୍ଞର ଆୟୋଜନ ଆରମ୍ଭ ହେଲା । ଯୁଧିଷ୍ଠିର ଏହି ଯଜ୍ଞରେ ଯୋଗଦେବା ପାଇଁ ତପସ୍ୱୀମାନଙ୍କୁ ସ୍ମରଣ କରନ୍ତେ ଶତ ଶତ ଋଷି, ମୁନି ନିଜ ନିଜର ଶିଷ୍ୟମାନଙ୍କ ସହିତ ଆସି ଯଜ୍ଞସ୍ଥଳରେ ଉପସ୍ଥିତ ହେଲେ । ବେଦବ୍ୟାସ ଷାଠିଏ ସହସ୍ର ଶିଷ୍ୟ ସହିତ ପହଞ୍ଚିଲେ । ପିତାମହଙ୍କୁ ଦେଖି ରାଜା ଆସନ ଛାଡ଼ି ତାଙ୍କର ଚରଣ ବନ୍ଦନା କଲେ । ଅଶ୍ୱମେଧ ଯଜ୍ଞର ଆୟୋଜନ ଦେଖି ବ୍ୟାସଦେବ ଯୁଧିଷ୍ଠିରଙ୍କୁ ବହୁ ପ୍ରଶଂସା କଲେ ଏବଂ ଏଥିପାଇଁ ଅଶ୍ୱିନୀକୁମାରଙ୍କୁ ଗୋଟିଏ ଉପଯୁକ୍ତ ଅଶ୍ୱ ଯୋଗାଇ ଦେବାପାଇଁ ପ୍ରାର୍ଥନା କରିବାକୁ ତାଙ୍କୁ ପରାମର୍ଶ ଦେଲେ । ଅଶ୍ୱମାନଙ୍କ ମଧ୍ୟରେ କୁବଳୟ ଶ୍ରେଷ୍ଠ । ଯୁଧିଷ୍ଠିରଙ୍କର ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଅଶ୍ୱିନୀକୁମାର ଏହି ଜାତି ଅଶ୍ୱଟିକୁ ଯଜ୍ଞାର୍ଥେ ପ୍ରେରଣ କଲେ ।

ଏହି ଦେବଅଶ୍ୱ ସେନ ଅର୍ଜୁନ ବଭିନ୍ନ ରାଜ୍ୟର ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ବାହାରିଲେ । ଯୁଦ୍ଧରେ ତ ରାଜାମାନେ ନିହତ ହୋଇଛନ୍ତି—ଅଛନ୍ତି କେବଳ ବାଳକ ରାଜାମାନେ । ଅର୍ଜୁନ ସେ ସମସ୍ତଙ୍କୁ ନିମନ୍ତ୍ରଣ କରି ଯଥାସମୟରେ ଫେରିଆସିଲେ । ମହା ସମାରୋହରେ ଯଜ୍ଞ କାର୍ଯ୍ୟ ସମାପ୍ତ ହେଲା । ଯଜ୍ଞ ଶେଷରେ ଉପସ୍ଥିତ ଅତିଥିମାନଙ୍କୁ ଯଥେଷ୍ଟ ଦାନ ଦିଆଗଲା । ଯୁଧିଷ୍ଠିରଙ୍କର ଏହି ଧର୍ମାନୁଷ୍ଠାନରେ ସନ୍ତୁଷ୍ଟ ହୋଇ ଦିଗପାଳମାନେ ଆକାଶରୁ ସୁବର୍ଣ୍ଣ ବୃଷ୍ଟି କଲେ ।

ତାପରେ ମୁନି, ଋଷି, କୃଷ୍ଣ ବଳରାମ ସ୍ୱ ସ୍ୱ ସ୍ଥାନକୁ ପ୍ରସ୍ଥାନ କଲେ । ଉପସ୍ଥିତ ରାଜନ୍ୟବୃନ୍ଦ ଫେରିଲେ ମାଗିଲେ । ଏତେ ଦିନଧରି ହସ୍ତିନାପୁରରେ ଯେଉଁ ଉତ୍ସବ ଚହଳ ଲାଗିଥିଲା ତାର ଅବସାନ ହେଲା ।

କର୍ତ୍ତବ୍ୟ ଅନୁରୋଧରେ ଯୁଧିଷ୍ଠିର ଦୀର୍ଘ ପନ୍ଦର ବର୍ଷ ରାଜତ୍ୱ କଲେ । ହେଲେ ଦିନକ ପାଇଁ ତାଙ୍କ ମନରେ ଶାନ୍ତି ନ ଥିଲା । ଅସଂଖ୍ୟ ସ୍ୱଜନଙ୍କ ହତ୍ୟା ତାଙ୍କ କୋମଳ ହୃଦୟରେ ଏପରି ରେଖାପାତ କରିଥିଲା, ଯେତେ ଚେଷ୍ଟା କଲେ ମଧ୍ୟ ତାହା ଲିଭିବାର ନୁହେଁ ।

ତଥାପି ସେ କର୍ତ୍ତବ୍ୟରେ ହେଳା କରିନାହାନ୍ତି କି ରାଜ ଶାସନରେ କୌଣସି ଅନସୂମତା ପ୍ରକାଶ କରିନାହାନ୍ତି ।

ଏହିପରି ସମୟରଥଚକ ଗଡ଼ି ଚାଲିଥାଏ । ଦିନେ ସେ ଏପରି ଏକ ଦୁଃସମ୍ବାଦ ପାଇଲେ ଯାହା ତାଙ୍କୁ ଅସ୍ଥିର କରି ପକାଇଲା । ଖବର ପହଞ୍ଚିଲା, ତାଙ୍କର ପିତୃପ୍ରତିମ

ଧୃତରାଷ୍ଟ୍ରଙ୍କ ମାତୃସମା ଗାନ୍ଧାରୀ ସମସ୍ତ ରାଜସମ୍ଭୋଗ ପରିତ୍ୟାଗ କରି ଅନଶନରେ ଭୂମିଶଯ୍ୟାରେ କାଳାତିପାତ କରୁଛନ୍ତି । ଯୁଧିଷ୍ଠିରଙ୍କର ଧାରଣା ଥିଲା, ରାଜଧର୍ମତଙ୍କର ଯଥେଷ୍ଟ ଯତ୍ନ ନିଆଯାଉଛି । ସେମାନେ ଆରାମରେ ଅଛନ୍ତି । ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ, ତାଙ୍କର ଶତ ଚେଷ୍ଟା ସତ୍ତ୍ୱେ ଧୃତରାଷ୍ଟ୍ର ଓ ଗାନ୍ଧାରୀ ଏପରି କଷ୍ଟରେ ରହିବେ ।

ରାଜକାର୍ଯ୍ୟରେ ତାଙ୍କର ଆଉ ମନ ଲାଗିଲା ନାହିଁ । ସେ ତତ୍‌କ୍ଷଣାତ୍ ଯାଇ ରାଜାଙ୍କ ନିକଟରେ ଉପସ୍ଥିତ ହୋଇ ଯାହା କହିଲେ, ସେଥିରୁ ତାଙ୍କର ଚରିତ୍ର କେତେ ନିର୍ମଳଙ୍କ ଥିଲା ଜଣାପଡ଼େ । ଆଉ ରାଜସମ୍ପଦ ଭୋଗ ଓ ରାଜକୀୟ କ୍ଷମତାକୁ ସେ କେପରି ତୁଚ୍ଛ ମନେ କରୁଥିଲେ ତାର ସ୍ପଷ୍ଟ ଅଭାସ ମିଳେ । ସେ କହିଥିଲେ –

ପିତୃଦେବ, ମୁଁ ଏ ଯାବତ୍ ଜାଣି ନଥିଲି ଆପଣ ଅନଶନ କରି ଭୂମି ଶଯ୍ୟାରେ ଶୟନ କରିଅଛନ୍ତି । ମୋ ଭାଇମାନେ ମଧ୍ୟ ଏ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ । ପିତଃ, ପୁତ୍ର ମାନଙ୍କ ନିଧନଜନିତ ଯେଉଁ ଶୋକ, ଯେଉଁ ଦୁଃଖ ଆପଣଙ୍କ ହୃଦୟରାଜ୍ୟକୁ ଗ୍ରାସ କରିଛି ତାହା କଦାପି ଦୂର ହୋଇ ନ ପାରେ । ମୋର ରାଜ୍ୟ ଦରକାର ନାହିଁ । ରାଜ ସମ୍ପଦ ଭୋଗ କରିବା ପାଇଁ ମୋର ତିଳେ ମାତ୍ର ଲାଳସା ନାହିଁ । ମୁଁ ମହାପାପୀ । କାମନା ଓ ହିତ ଅଭିଳାଷ ହିଁ ମୋର ଦୁଃଖର ପ୍ରଧାନ କାରଣ । ମୁଁ ଏହି ରାଜପଦରେ ଆଉ ମୁହୂର୍ତ୍ତେ ମାତ୍ର ରହିବା ପାଇଁ ଇଚ୍ଛା କରୁନାହିଁ । ରାଜ୍ୟ ଆପଣଙ୍କର । ଏହି ମୁହୂର୍ତ୍ତରେ ଏହି ରାଜ ମୁକୁଟ ମୋ ଠାରୁ ନେଇ ଯାଆନ୍ତୁ । ମୋର ଦୁଃଖ ଅଶାନ୍ତିପୂର୍ଣ୍ଣ ଜୀବନର ଶେଷ ଅଧ୍ୟାୟର ଏହିଠାରେ ପରିସମାପ୍ତି ହେଉ ।

ଆପଣ ବନକୁ ଯିବେ, ଏଥିପାଇଁ ମୋର ଅନୁମତି ପ୍ରାର୍ଥନା କରିଛନ୍ତି । ଅନୁମତି ଦେବାର ପାତ୍ର ମୁଁ ନୁହେଁ, ଆପଣ ରାଜା ଓ ମୋର ପିତାସଦୃଶ । ମୁଁ କେପରି ଏହି ପ୍ରସ୍ତାବରେ ସମ୍ମତି ବା ଅସମ୍ମତି ପ୍ରଦାନ କରିବି ? ଯାହା ବିଧିନିର୍ଦ୍ଦିଷ୍ଟ ଘଟିଯାଇଛି । ସେଥିରେ ମୋର କୌଣସି ହାତ ନ ଥିଲା । ଅମ୍ଭେମାନେ ଆପଣଙ୍କର ସନ୍ତାନ ତୁଲ୍ୟ । ଗାନ୍ଧାରୀ ଓ କୁନ୍ତୀ ଉଭୟେ ଆମର ମାତା । ଯଦି ଆପଣ ବନଗମନ ନିଷ୍ପତ୍ତିରେ ଅଟଳ ରହନ୍ତି, ତେବେ ମୁଁ ମଧ୍ୟ ଆପଣଙ୍କ ସଙ୍ଗରେ ଯିବି ଏବଂ ପାଖେ ପାଖେ ରହି ଆପଣଙ୍କର ସେବା କରିବି । ମୁଁ ବିନୀତ ପ୍ରାର୍ଥନା କରୁଛି, ଆପଣ ଅମ୍ଭମାନଙ୍କର ଦୋଷ କ୍ଷମା କରନ୍ତୁ । ବନଗମନ ଅଭିଳାଷ ପରିହାର କରନ୍ତୁ ।

ଧୃତରାଷ୍ଟ୍ରଙ୍କର ଅଟଳ ପ୍ରତିଜ୍ଞା—ସେ ଗାନ୍ଧାରୀଙ୍କ ସହିତ ଶେଷ ଜୀବନ ବନରେ କଟାଇବେ । ରାଜ୍ୟ ଓ ପ୍ରାସାଦରେ ଆଉ କ୍ଷଣେ ରହିବେ ନାହିଁ ।

ଧୃତରାଷ୍ଟ୍ର ଓ ଯୁଧିଷ୍ଠିରଙ୍କ ମଧ୍ୟରେ ବନଗମନ ନେଇ ଏହିପରି ଟଣା ଓଟରା ଚାଲିଥିଲାବେଳେ ମହାମୁନି ବେଦବ୍ୟାସ ସେଠାରେ ହଠାତ୍ ପହଞ୍ଚି ଏହି ସମସ୍ୟାର

ସମାଧାନ କରିଦେଲେ । ସେ ଯୁଧିଷ୍ଠିରଙ୍କୁ ବୁଝାଇ ଦେଲେ, ଧୃତରାଷ୍ଟ୍ର ଯେଉଁ ଇଚ୍ଛାଟି କରିଛନ୍ତି ସେଥିରୁ ତାଙ୍କୁ ନିବର୍ତ୍ତାଇବା ଉଚିତ ନୁହେଁ । ସେ ରାଜସମ୍ପଦ ଯଥେଷ୍ଟ ଭୋଗ କରିଛନ୍ତି, ବହୁ ଦାନ ଧର୍ମ ମଧ୍ୟ କରିଛନ୍ତି । ବର୍ତ୍ତମାନ ତପସ୍ୟା ସାଧନ କରିବାର ସମୟ ଉପସ୍ଥିତ । ଏ ପ୍ରସ୍ତାବରେ ତୁମେ ସମ୍ମତ ହୁଅ । ଜୀବନର ଶେଷ ଆଶା ପୂରଣ ଦିଗରେ ତୁମେ ତାଙ୍କୁ ସାହାଯ୍ୟ କର । ଯୁଧିଷ୍ଠିର ସମ୍ମତି ହେଲେ ।

ଧୃତରାଷ୍ଟ୍ର, ଗାନ୍ଧାରୀ, କୁନ୍ତୀ—ଏହି ତିନି ଜଣ ସମସ୍ତଙ୍କଠାରୁ ବିଦାୟ ନେଇ ଗଭୀର ଅରଣ୍ୟରେ ପ୍ରବେଶ କଲେ । ମାତ୍ର ସଂସାରରେ ବେଶୀ ଦିନ ସେମାନଙ୍କୁ ରହିବାକୁ ପଡ଼ିଲା ନାହିଁ । ବନକୁ ଯିବାର ମାତ୍ର ତିନି ବର୍ଷ ନ ପୂରୁଣୁ ବନାଗ୍ନିରେ ସେମାନଙ୍କର ଜୀବନଦୀପ ଚିରଦିନ ପାଇଁ ନିର୍ବାପିତ ହେଲା ।

## ସ୍ୱର୍ଗାରୋହଣ

ଯୁଧିଷ୍ଠିର ରାଜ୍ୟ ଶାସନ କରୁଥାନ୍ତି । ତାଙ୍କର ସୁଶାସନରେ ପ୍ରଜାମାନଙ୍କର ପରମ ସନ୍ତୋଷ । ହେଲେ ଯୁଧିଷ୍ଠିରଙ୍କର ମନରେ ସୁଖ ନ ଥାଏ । ପବିତ୍ର ଅଶ୍ୱମେଧ ଯଜ୍ଞ ତାଙ୍କ ମନରେ କୌଣସି ପରିବର୍ତ୍ତନ ଆଣିପାରିଲା ନାହିଁ । ସର୍ବଦା ଗୋଟିଏ ଚିନ୍ତା । କି ଭୁଲ ସେ ନ କଲେ । ଛାର ରାଜ୍ୟ ପାଇଁ ଜ୍ଞାତି କୁଟୁମ୍ବଙ୍କର ଲୋପର କାରଣ ହେଲେ । ଏହିପରି ନାନା ଦୁଶ୍ଚିନ୍ତାରେ ସମୟ କାଟୁଥିଲାବେଳେ ଖବର ପହଞ୍ଚିଲା, ଧୃତରାଷ୍ଟ୍ର, ଗାନ୍ଧାରୀ, କୁନ୍ତୀ ବନାଗ୍ନିରେ ଦଗ୍ଧ ହୋଇଯାଇଛନ୍ତି । ଏ ଦାରୁଣ ଧକ୍କା ଯୁଧିଷ୍ଠିର ସମ୍ଭାଳି ପାରିଲେ ନାହିଁ । ଅସୀମ ଧୈର୍ଯ୍ୟଶାଳୀ ସେ, ମାତ୍ର ଏହି ଦୁଃସମ୍ବାଦ ତାଙ୍କର ଧୈର୍ଯ୍ୟ ବନ୍ଧ ଦୋହଲାଇ ଦେଲା । ସେ ଆଜି ମାତୃହରା । ପିତା ପ୍ରତିମ ଧୃତରାଷ୍ଟ୍ର, ମାତୃସମା ଗାନ୍ଧାରୀ ଇହଜଗତରେ ନାହାନ୍ତି । ସେ ଅତିଶୟ ବିଚଳିତ ହୋଇପଡ଼ିଲେ । ଶ୍ରାବଣର ବାରି ଧାରା ପରି ଲୋତକ ଧାର ଅବିରତ ତାଙ୍କ ଆଖିରୁ ଛୁଟି ଚାଲିଲା ।

ବିପଦ ଆସିଲାବେଳେ କେବେ ଏକାକୀ ଆସେ ନାହିଁ, ସାଙ୍ଗ ସାଥୀ ନେଇ ଆସେ । ଯୁଧିଷ୍ଠିର ପିତୃ ମାତୃ ଶୋକରେ ଅଭିଭୂତ ଥିଲାବେଳେ ଅନ୍ୟ ଏକ ଦାରୁଣ ଦୁଃସମ୍ବାଦ ପହଞ୍ଚିଲା ।

କୃଷ୍ଣ ତାଙ୍କର ବନ୍ଧୁ ଓ ସଖା । ଜୀବନରେ ଅନେକ ବର୍ତ୍ତିକାପରି । ତାଙ୍କର ଅକୃତ୍ରିମ ସାହାଯ୍ୟ ସହାନୁଭୂତି ଯୋଗୁଁ ସେ ମହାମହା ବିପଦ ଅତିକ୍ରମ କରି ଯାଇଛନ୍ତି । ଦୃଢ଼ତାର ସହିତ କର୍ତ୍ତବ୍ୟ ସମ୍ପାଦନ କରିଆସିଛନ୍ତି ।

କୁରୁକ୍ଷେତ୍ର ଯୁଦ୍ଧପରେ ପ୍ରାୟ ଛତିଶ ବର୍ଷ ସେ ଦ୍ୱାରକାର ସର୍ବମୟ କର୍ତ୍ତା ଥିଲେ । କୃଷ୍ଣଙ୍କର ସୁଶାସନ ସତ୍ତ୍ୱେ ତାଙ୍କ ବଂଶର ପ୍ରମୁଖ ନେତାମାନେ ଜୀବନ ଆଦର୍ଶ ଭୁଲି,

ଧର୍ମମାର୍ଗ ଉଲ୍ଲଙ୍ଘନ କରି ଅତ୍ୟନ୍ତ ସ୍ୱାର୍ଥପର ହୋଇପଡ଼ିଲେ । ଶ୍ୱେତ ବଳାସରେ ବୁଡ଼ି ରହିଲେ । କୃଷ୍ଣ ଦେଖିଲେ, ଏହି ମରଜଗତରେ ତାଙ୍କର ଲୀଳାଖେଳା ଶେଷ ହୋଇଛି । ଯେଉଁ ଧର୍ମ ସଂସ୍ଥାପନ ପାଇଁ ତାଙ୍କର ଆବିର୍ଭାବ ହୋଇଥିଲା ତାହା ଶେଷ ହୋଇଛି । ଆଉ ସଂସାରରେ ରହିବା ପାଇଁ ତାଙ୍କର ଇଚ୍ଛା ହେଲା ନାହିଁ । ସେ ଦେଖିଲେ, ଭୋଗ ବିଳାସରେ ଉନ୍ମତ୍ତ ଯାଦବମାନଙ୍କୁ ସଂସାରରେ ଛାଡ଼ିଦେଇ ସେ ଶାନ୍ତିରେ ସଂସାର ଛାଡ଼ିପାରିବେ ନାହିଁ । ଏମାନେ ଥିଲେ ପୁଣି ଧର୍ମର ଅବମାନନା ହେବ, ପୃଥିବୀର ଅମଙ୍ଗଳ ସାଧିତ ହେବ । ଅତଏବ ନିଜେ ଯିବା ପୂର୍ବରୁ ତାଙ୍କ ବଂଶର ବିଲୋପ ସାଧନ ଏକ ଅବଶ୍ୟକର୍ତ୍ତବ୍ୟ।

ତାହାହିଁ ହେଲା । ଯାଦବମାନେ ନିଜ ନିଜ ମଧ୍ୟରେ କଳହ କରି ନିପାତ ହୋଇଗଲେ । ବଂଶରେ ଆଉ କେହି ରହିଲେ ନାହିଁ । ଏହାଦେଖି ବଳରାମ ସମୁଦ୍ରରେ ପ୍ରବେଶ କରି ଅସ୍ତ୍ର ବିସର୍ଜନ କଲେ । କୃଷ୍ଣ ଏକ ବନର ଲତାକୁଞ୍ଜରେ ଶୟନ କରିଥିଲାବେଳେ ଗୋଟିଏ ଶିକାରୀର ତୀକ୍ଷ୍ଣ ଶରରେ ଦେହତ୍ୟାଗ କଲେ ।

କୃଷ୍ଣଙ୍କର ତିରୋଭାବବାର୍ତ୍ତା ଯୁଧିଷ୍ଠିର ବିନା ମେଘରେ ବଜ୍ରପାତ ସଦୃଶ ମନେ କଲେ । ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୁନ୍ତୀଙ୍କର ତିରୋଧାନ ତାଙ୍କର ଧୈର୍ଯ୍ୟବନ୍ଧ ଦୋହଲାଇ ଦେଇଥିଲା । ବର୍ତ୍ତମାନ ଏହି ଦାରୁଣ ଦୁଃସମ୍ବାଦ ତାହାଙ୍କୁ ଧ୍ୱସ୍ତ ବିଧ୍ୱସ୍ତ କରିଦେଲା । ସେ ଆଉ ମୁହୂର୍ତ୍ତେ ମାତ୍ର ଏ ସଂସାରରେ ରହିବାକୁ ଇଚ୍ଛା କଲେ ନାହିଁ । ସ୍ୱର୍ଗାରୋହଣ କରିବାକୁ ମନସ୍ଥ କଲେ । ଅନ୍ୟ ଭାଇମାନେ ଏବଂ ଦ୍ରୌପଦୀ ତାଙ୍କର ସହଗମନ କରିବା ନିମିତ୍ତ ମଧ୍ୟ ସ୍ଥିର କରିଦେଲେ ।

ରାଜ୍ୟ ତ୍ୟାଗ କରିବା ପୂର୍ବରୁ ପରୀକ୍ଷିତଙ୍କୁ ସେ ଶାସନ ଦାୟିତ୍ୱ ଅର୍ପଣ କଲେ । ଆଉ ତାଙ୍କୁ ଉପଦେଶ ଦେଇ କହିଲେ, ବାବୁ ଆମ୍ଭେମାନେ ଚାଲିଲୁ । ରାଜ୍ୟ ତୁମ୍ଭଙ୍କୁ ଲାଗିଲା । ପ୍ରଜାମାନଙ୍କୁ ଭଲରେ ପାଳନ କଲେ ଇନ୍ଦ୍ରଦେବ ସନ୍ତୋଷରେ ବୃଷ୍ଟି କରନ୍ତି । ପ୍ରଜା ସୁଖିହେଲେ ଧରା ଶସ୍ୟଶ୍ୟାମଳା ହୁଏ । ଧରା ଶସ୍ୟପୂର୍ଣ୍ଣ ହେଲେ ପ୍ରଜାମାନେ ଯେ କେବଳ ସୁଖରେ ରହନ୍ତି-ତା ନୁହେଁ ରାଜକୋଷ ମଧ୍ୟ ପରିପୂର୍ଣ୍ଣ ରହେ । ଅମ୍ଳ ଓ ଶ୍ରୀ ବୃଦ୍ଧି ପାଏ ।

ଏହାପରେ ନାନା ଉପଦେଶ ଦେଇ ଯୁଧିଷ୍ଠିର ଭାଇ ଓ ଦ୍ରୌପଦୀଙ୍କ ସହିତ ତୀର୍ଥ ଯାତ୍ରାରେ ବାହାରିଲେ । ଏତିକିବେଳେ କେଉଁଠୁ ଶ୍ୱାନଟିଏ ଆସି ଏହି ଯାତ୍ରୀମାନଙ୍କ ସହିତ ଯୋଗ ଦେଲା ।

ଏହି ସାତଜଣ ଯାତ୍ରୀ ବହୁ ତୀର୍ଥ ପର୍ଯ୍ୟଟନ କରି ପର୍ବତରାଜ ହିମାଳୟର ପାଦ ଦେଶରେ ଉପସ୍ଥିତ ହେଲେ ।

ଯୁଧିଷ୍ଠିର କହିଲେ, ବର୍ତ୍ତମାନ ଆମ୍ଭମାନଙ୍କର ତୀର୍ଥଭ୍ରମଣ ଶେଷ ହୋଇଛି । ସମ୍ମୁଖରେ ନଗାଧିରାଜ ହିମାଳୟ ବିଦ୍ୟମାନ । ସ୍ୱର୍ଗକୁ ଏହାହିଁ ରାସ୍ତା । ଆମ୍ଭମାନଙ୍କୁ ଧୈର୍ଯ୍ୟର ସହିତ ଆରୋହଣ କରିବାକୁ ହେବ ।

ହିମାଳୟ ଆରୋହଣ ଆରମ୍ଭ ହେଲା । ଯୁଧିଷ୍ଠିର ସମସ୍ତଙ୍କ ଆଗରେ ଯାଉଥାନ୍ତି । ପଛକୁ ପଛ ଭୀମ, ଅର୍ଜୁନ, ନକୁଳ, ସହଦେବ, ଦ୍ରୌପଦୀ । ସମସ୍ତଙ୍କ ପଛରେ ସେହି ଶ୍ୱାନଟି ଚାଲିଥାଏ ।

ହିମାଳୟ ଆରୋହଣ ଅତୀବ କଷ୍ଟକର । ଚତୁର୍ଦ୍ଦିଗରୁ ପ୍ରବଳ ଥଣ୍ଡା ପବନ ବହି ଆସୁଥାଏ । ରାସ୍ତା ମଧ୍ୟ କଣ୍ଟକିତ । କିଛି ଦୂର ସେହି ଦୁର୍ଗମ ପଥରେ ଗଲାପରେ ଦ୍ରୌପଦୀ ଆଉ ଏହି କଷ୍ଟ ସମ୍ଭାଳି ପାରିଲେ ନାହିଁ, ପଡ଼ିଗଲେ । ସେହିଠାରେ ଯାଜ୍ଞସେନୀଙ୍କର ଜୀବନ ଦୀପ ଲିଭିଗଲା । ସେଥିପାଇଁ କାହାରି ଭ୍ରୂକ୍ଷେପ ନାହିଁ—'ଗିରି ଶିଖେ ଲକ୍ଷ୍ୟ ରଖିବ ଚାଲିବ ମୃକର' ଏହାହିଁ ଅଭିଯାତ୍ରୀ ଦଳର ଦୃଢ଼ ପ୍ରତିଜ୍ଞା ।

ଯାତ୍ରୀଦଳ ଆଗେଇ ଚାଲିଥାନ୍ତି । କ୍ରମେ ସହଦେବ, ନକୁଳ, ଅର୍ଜୁନ ଏବଂ ଶେଷରେ ମହାବଳୀ ଭୀମ ସେହି ଦୁର୍ଗମ ରାସ୍ତାରେ ଜଣକ ପରେ ଜଣେ ଜୀବନ ତ୍ୟାଗ କଲେ । ଶେଷକୁ ରହିଲେ ଯୁଧିଷ୍ଠିର ଆଉ ସେହି ଶ୍ୱାନଟି ।

ଭାଇ ବା ସ୍ତ୍ରୀଙ୍କର ବିୟୋଗ ଯୁଧିଷ୍ଠିରଙ୍କୁ ବିଚଳିତ କରିପାରି ନ ଥିଲା । କର୍ତ୍ତବ୍ୟ ସାଧନ କରିବାକୁ ହେବ, ଏଥିପାଇଁ ଜୀବନ ଗଲେ ଯାଉ— ଏହି ପ୍ରତିଜ୍ଞାରେ ଅଟଳ ରହି ସେ ଏହି ଦୁର୍ଗମ ପଥ ଅତିକ୍ରମ କରି ଉପରକୁ ଉଠୁଥାନ୍ତି ।

ହିମାଳୟ ପର୍ବତର ଶିଖର କେଣ ଆଉ ବେଶୀ ଦୂର ନୁହେଁ । ଏହି ସମୟରେ ଜଣେ ଜ୍ୟୋତିର୍ମୟ ଦିବ୍ୟପୁରୁଷ ରଥରେ ଯୁଧିଷ୍ଠିରଙ୍କ ନିକଟରେ ଆବିର୍ଭୂତ ହୋଇ କହିଲେ—ତୁମର ଭାଇମାନେ ଓ ଦ୍ରୌପଦୀ ତୁମ ପୂର୍ବରୁ ସ୍ୱର୍ଗ ରାଜ୍ୟରେ ଉପସ୍ଥିତ ହୋଇ ସାରିଛନ୍ତି । ତୁମେ ପଛରେ ପଡ଼ିଯାଇଛ । ଆସ, ଏହି ରଥରେ ମୁଁ ତୁମକୁ ସ୍ୱଦେହରେ ସ୍ୱର୍ଗକୁ ନେଇଯିବି । ଏହା ଶୁଣି ଯୁଧିଷ୍ଠିର ରଥାରୋହଣ କଲେ । ସାଥୀ ଶ୍ୱାନଟି ମଧ୍ୟ ରଥ ଉପରକୁ ଡେଇଁ ପଡ଼ିଲା ।

ଆରେ ଏ କଣ ! ଜ୍ୟୋତିର୍ମୟ ପୁରୁଷଙ୍କ ହୃଦୟ ଘୃଣାରେ ପୂର୍ଣ୍ଣ । ଘୃର କୁକୁରଟାଏ ଦେବଯାନରେ ଆରୋହଣ କରିବ । ସ୍ୱର୍ଗ ଶ୍ୱାନମାନଙ୍କ ପାଇଁ ଅଭିପ୍ରେତ ନୁହେଁ ।

ତେବେ ମୋର ମଧ୍ୟ ସେପରି ସ୍ୱର୍ଗରେ ସ୍ଥାନ ନାହିଁ—ମୁଁ ମୋର ସାଙ୍ଗଟିକୁ ଛାଡ଼ି କଦାପି ଯାଇ ନ ପାରେ । ସେ ସ୍ୱର୍ଗ ବା ନରକ ଯାହାହେଉ—ଯୁଧିଷ୍ଠିରଙ୍କର କଣ୍ଠ ସ୍ୱରରେ ଅପୂର୍ବ ଦୃଢ଼ତା ।

ଶ୍ୱାନଟି ଆଉ କେହି ନୁହେଁ, ସ୍ୱୟଂ ଧର୍ମଦେବତା । ପୁତ୍ରର ଧର୍ମନିଷ୍ଠା ପରୀକ୍ଷା କରିବା ପାଇଁ ଆସିଥିଲେ । ଯୁଧିଷ୍ଠିରଙ୍କର ଧର୍ମରେ ଅସାଧାରଣ ଅନୁରକ୍ତି ଦେଖି ଚକ୍ଷୁରେ ପଲକ ନ ପଡୁଣୁ କେଉଁଆଡ଼େ ଅନ୍ତର୍ହିତ ହୋଇଗଲେ । ରଥ ପବନ ବେଗରେ ଉପରକୁ ଉଠୁଥାଏ । କ୍ରମେ ପୃଥିବୀ ଅଦୃଶ୍ୟ ହୋଇଗଲା । ପ୍ରଚଣ୍ଡ ସୂର୍ଯ୍ୟକିରଣ ପରିବର୍ତ୍ତିତ ହେଲା ଏକ ଅପୂର୍ବ ଆଲୋକରେ । ସେଥିରେ ଅଛି ଉଜ୍ଜ୍ୱଳତା, ମାତ୍ର ଉଷ୍ଣତା ନାହିଁ । ସତେ ଯେପରି ଜହ୍ନ ଆଲୁଅ । ତଫାତ ଏତିକି ଜ୍ୟୋତ୍ସ୍ନା ଧବଳ ବର୍ଣ୍ଣ, ମାତ୍ର ଏହାର ରଙ୍ଗ ଗୋଲାପୀ ।

ଆଉ କିଛି ବାଟ ଗିବା ପରେ ଏକ ଅପୂର୍ବ ସୁନ୍ଦର ତୋରଣ ଦିଶିଗଲା— ଯେଉଁଠାରେ ମନୁଷ୍ୟର ଚିନ୍ତା ବର୍ତ୍ତି ନାହିଁ, ସେଇଆଡ଼େ ବୁଲୁଛନ୍ତି ଅପୂର୍ବ ସୁନ୍ଦର ନରନାରୀ । ମହାର୍ହ ବସ୍ତ୍ର ପରିଧାନ କରି ଏଣେ ତେଣେ ବିଚରଣ କରୁଅଛନ୍ତି—ସମସ୍ତଙ୍କ ଶରୀରରୁ ଅପୂର୍ବ ତେଜ ନିର୍ଗତ ହେଉଛି । ଚତୁର୍ଦ୍ଦିଗରେ ବିଭିନ୍ନ ଜାତିର ପୁଷ୍ପର ଅପୂର୍ବ ଶୋଭା—ସେସବୁ ଫୁଲର ସୁଗନ୍ଧ ନେଇ ଧୀର ପବନ ବହି ଯାଉଛି । କି ମନମତାଣିଆ ସେ ଦୃଶ୍ୟ ! ଯୁଧିଷ୍ଠିର ଭାବିଲେ, ଏହାହିଁ ସ୍ୱର୍ଗପୁର ।

ସତକୁ ସତ ରଥ ରହିଲା । ଯୁଧିଷ୍ଠିର ସେଥିରୁ ଅବତରଣ କରୁ ନ କରୁଣୁ ରଥ ଓ ରଥାରୋହୀ କେଉଁଆଡ଼େ ଅଦୃଶ୍ୟ ହୋଇଗଲେ । ଯୁଧିଷ୍ଠିର କିଛି ଦୂର ଅଗ୍ରସର ହେଲେ । ଦେଖିଲେ ଦୁର୍ଯ୍ୟୋଧନ ଏକ ମହାର୍ହ ରତ୍ନ ସିଂହାସନରେ ଉପବିଷ୍ଟ, ଶରୀରରେ ସୂର୍ଯ୍ୟ ତେଜ ଜିଣି ଅପୂର୍ବ ଜ୍ୟୋତି । ସିଂହାସନ ନିକଟରେ ସ୍ୱର୍ଗର ଅପସରାମାନେ ଦଣ୍ଡାୟମାନ ।

ଯୁଧିଷ୍ଠିର ଆଶ୍ଚର୍ଯ୍ୟ ହେଲେ ।

ସେତେବେଳକୁ କେତେ ଜଣ ସ୍ୱର୍ଗ ଅଧିବାସୀ ଯୁଧିଷ୍ଠିରଙ୍କ ନିକଟରେ ପହଞ୍ଚି ସାରି ଏହି ଅପୂର୍ବ ପୁରୁଷଟିକୁ କୌତୂହଳପୂର୍ଣ୍ଣ ଦୃଷ୍ଟିରେ ଚାହିଁ ରହିଥାନ୍ତି । ଯୁଧିଷ୍ଠିର ସେମାନଙ୍କୁ ସମ୍ବୋଧନ କରି ପଚାରିଲେ—ମୋ ଭାଇମାନେ କାହାନ୍ତି । ଲୋଭ, ହିଂସା ଦ୍ୱେଷର ପ୍ରତିମୂର୍ତ୍ତି ଯେଉଁଠାରେ ରତ୍ନ ସିଂହାସନରେ ସଗର୍ବେ ଉପବିଷ୍ଟ—ସେଠାରେ କ୍ଷଣେ ରହିବାକୁ ମୋର ଇଚ୍ଛା ନାହିଁ । ଦୂରଦୃଷ୍ଟିହୀନ ଏହି କ୍ରୂର ବ୍ୟକ୍ତି ଦ୍ୱାରା ଆମ୍ଭେମାନେ ଅକଥନୀୟ ଯାତନା ଭୋଗ କରିଅଛୁ । ଏହାଙ୍କର ନିର୍ଦ୍ଦେଶରେ ମହାସତୀ ଯାଜ୍ଞସେନୀ ଭରାସଭାତଳେ ବିବସନା ହୋଇଛନ୍ତି । ଏପରି ବ୍ୟକ୍ତିର ମୁଖାବଲୋକନ ମୋ ପକ୍ଷରେ ଦୁଃସହ୍ୟ । ମୋତେ କହନ୍ତୁ—ମୋର ଭାଇମାନେ କାହାନ୍ତି ?

ଏତିକି କହି ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କ ନିକଟରୁ ମୁଖ ଫେରାଇ ଅଗ୍ରସର ହେବାକୁ ଉଦ୍ୟତ ହେଲେ । ଏହି ସମୟରେ ସର୍ବଜ୍ଞାନର ଭଣ୍ଡାର, ମହାଭକ୍ତ ନାରଦ ତାହିଁ ଆସି ଉପସ୍ଥିତ ହୋଇ କହିଲେ—

ରାଜପୁତ୍ର, ଏହା ସ୍ୱର୍ଗପୁର । ଏଠାରେ ହିଂସା ଦ୍ୱେଷର ସ୍ଥାନ ନାହିଁ । ତୁମେ ଦୁର୍ଯ୍ୟୋଧନଙ୍କ ପ୍ରତି ଯେଉଁ ଅଶୋଭନୀୟ ପ୍ରଶ୍ନ କଲ ତାହା ଉଚିତ ହୋଇନାହିଁ । ଦୁର୍ଯ୍ୟୋଧନ କ୍ଷତ୍ରିୟ ଧର୍ମ ପାଳନ କରିଥିଲେ—ଯୁଦ୍ଧକ୍ଷେତ୍ରରେ ବୀର ପରି ପ୍ରାଣ ବିସର୍ଜନ କରିଥିଲେ । ଫଳରେ ସେ ଏହି ଗୌରବମୟ ସ୍ଥାନ ଅଧିକାର କରିଛନ୍ତି । ପୃଥିବୀରେ ରକ୍ତ ମାଂସଧାରୀ ମନୁଷ୍ୟ ମନରେ ଯେଉଁ ହିଂସା, କ୍ରୋଧ, ଘୃଣା ହୃଦୟରେ ପୋଷଣ କରେ ସେ ସବୁ ଦୁର୍ଗୁଣ ପରିତ୍ୟାଗ କରି ଦୁର୍ଯ୍ୟୋଧନଙ୍କ ନିକଟରେ ଯାଅ । ତୁମେ ସଶରୀରରେ ସ୍ୱର୍ଗ ରାଜ୍ୟରେ ପ୍ରବେଶ କରିଥିବାରୁ ମର୍ତ୍ତ୍ୟପୁରର ଭାବନା ତୁମ ହୃଦୟରୁ ଅନ୍ତର୍ହିତ ହୋଇ ନାହିଁ ।

ମହର୍ଷିଙ୍କ ଯୁଧିଷ୍ଠିର ବିନୟର ସହିତ ଉତ୍ତର ଦେଲେ—ଯେଉଁ ବ୍ୟକ୍ତି କ୍ରୋଧ, ହିଂସା, ପରଶ୍ରୀକାତରତାର ଅବତାର, ଯାହାଙ୍କର ନିର୍ଦ୍ଦେଶରେ ଶତ ଶତ ବୀର ଲୁଣ୍ଠିତ ହୋଇଛନ୍ତି, ଯାହାର ଇଙ୍ଗିତରେ ଅନେକ ଜନସାଧାରଣ ଅନେକାନେକ ଯାତନା ଭୋଗ କରିଅଛନ୍ତି ସେ ଯଦି ଏପରି ଗୌରବମୟ ସ୍ଥାନର ଅଧିକାରୀ ହୋଇପାରିଛନ୍ତି ତେବେ ମୋର ଭାଇମାନେ, ଯେଉଁମାନେ କି ସାରାଜୀବନ ସତ୍ୟ ପଥରୁ ତିଳେ ମାତ୍ର ବିଚ୍ୟୁତ ହୋଇନାହାନ୍ତି ସେମାନେ ବି ନିଶ୍ଚିତଭାବରେ ଏହାଠାରୁ ଅଧିକ ଗୌରବମୟ ସ୍ଥାନରେ ରହିଥିବେ । ତାହାନ୍ତି ମୋର ବନ୍ଧୁଗଣ—ଯେଉଁମାନେ ଅକୁଣ୍ଠିତ ଭାବରେ ମୋ ପାଇଁ ଜୀବନ ବିସର୍ଜନ କରିଛନ୍ତି ? ତାହାନ୍ତି ବିରାଟ, ଦ୍ରୁପଦ, ଧୃଷ୍ଟଦ୍ୟୁମ୍ନ—ସେମାନଙ୍କୁ ମୁଁ ଦେଖିବାକୁ ଚାହେଁ ।

ଏହି ସମୟରେ ଜଣେ ଦେବଦୂତ କହିଲେ—ଯୁଧିଷ୍ଠିର ତୁମେ ଯଦି ତୁମର ଭାଇ, ବନ୍ଧୁ, ଆତ୍ମୀୟସୋଦରମାନଙ୍କୁ ଦେଖିବାକୁ ଚାହିଁ, ଏଠାରେ ରହିବାର ଆବଶ୍ୟକତା ନାହିଁ । ଅଗ୍ରସର ହୁଅ, ତୁମର ଉଦ୍ଦେଶ୍ୟ ପୂରଣ ହେବ ।

ଏହା କହି ଦୂତ ଆଗେ ଆଗେ ଚାଲିଲେ । ଯୁଧିଷ୍ଠିର ତାଙ୍କ ଅନୁସରଣ କରୁଥାନ୍ତି ।

କିଛି ଦୂର ଅଗ୍ରସର ହେବା ପରେ କ୍ରମେ ସେହି ଜ୍ୟୋତିର୍ମୟୀ ଅଲୋକ ଅନ୍ତର୍ହିତ ହୋଇଗଲା—ମାତ୍ରଅଧିକ ଘନାନ୍ଧକାର । ସେହି ଅନ୍ଧକାର ମଧ୍ୟରେ ସେମାନେ ଆଗେଇ ଚାଲିଥାନ୍ତି ଆଗକୁ ଆଗକୁ—ରାସ୍ତା କ୍ରମେ ଦୁର୍ଗମ ହୋଇପଡ଼ିଲା । ପାଦ ତଳେ ରକ୍ତର କର୍ଦ୍ଦମ । ମଣିଷ ମୁଣ୍ଡ ଠାଏ ଠାଏ ପଡ଼ିଛି । କେଉଁଠାରେ ହାଡ଼ ଜମା ହୋଇଛି । ପରିବେଶକୁ ଅଦ୍ଭୁତ ଭୟଙ୍କର କରି ଦେଉଥାଏ ପଚାଗନ୍ଧ । ଯୁଧିଷ୍ଠିର କ୍ରମେ ଅସ୍ଥିର ହୋଇପଡ଼ିଲେ । ଭାବି କହିଲେ—ଏ ପରିବର୍ତ୍ତନର କାରଣ ମଧ୍ୟ ସେ ବୁଝି ପାରୁ ନ ଥାନ୍ତି ।

ଗଲୁଥାନ୍ତି, ଏ କଣ ! କେତେଦୂର ଏପରି ଯିବାକୁ ହେବ—ସେ ଆଉ ସମ୍ଭାଳି ପାରିଲେ ନାହିଁ, ପଚାରିଲେ ବନ୍ଧୁ ! ଆଉ କେତେ ବାଟ ଏପରି ଯିବାକୁ ହେବ ?

ଦେବଦୂତ ନିରୁତ୍ତର—ଆଗେଇ ଚାଲିଥାନ୍ତି ।

ଏହିପରି କିଛି ଦୂର ଅଗ୍ରସର ହେବାପରେ ଚତୁର୍ଦ୍ଦିଗରୁ ବିକଳ ଧ୍ୱନି ଭାସିଆସିଲା । ଯୁଧିଷ୍ଠିର ଚମକି ପଡିଲେ-ଏ ତ ତାଙ୍କର ପରିଚିତ କଣ୍ଠସ୍ୱର ।

କମେ ଦୁର୍ଗନ୍ଧ ଉତ୍କଟ ହେଲା—ଯୁଧିଷ୍ଠିର ଫେରି ଯିବାକୁ ଚାହୁଁଛନ୍ତି । ଏହି ସମୟରେ ଶୁଣାଗଲା—

ଧର୍ମପୁତ୍ର ଫେରିଯାଆନ୍ତୁ ନାହିଁ- କିଛି ସମୟ ଏଠାରେ ରହନ୍ତୁ । ଆପଣଙ୍କର ଉପସ୍ଥିତି ଏକ ମଧୁର ପରିବେଶ ସୃଷ୍ଟିକରିଛି । ଆମ୍ଭେମାନେ ଦାରୁଣ ଯନ୍ତ୍ରଣା ଭୋଗୁଛୁ । ହେ, କୁନ୍ତୀତନୟ—ଆମ୍ଭମାନଙ୍କୁ ଏଠାରେ ଏପରି ନିସ୍ସହାୟଭାବରେ ପକାଇ ଦେଇ ଚାଲିଯିବେ ? ସକଳ ତ୍ୟାଗ କରନ୍ତୁ—ଓଃ କି ମଧୁମୟ ପରିସ୍ଥିତି—ସକଳ କଷ୍ଟ, ସକଳ ଯାତନା ଯେପରି ଦୂର ହୋଇଗଲା ପରି ବୋଧ ହେଉଛି । ଦୟା କରନ୍ତୁ ପ୍ରଭୋ, ଏଠାରେ ଆଉ କିଛି ସମୟ ଅବସ୍ଥାନ କରନ୍ତୁ ।

ଏହିପରି ବିକଳ ପ୍ରାର୍ଥନାରେ ଯୁଧିଷ୍ଠିରଙ୍କର ହୃଦୟ ଦୟାରେ, ଅନୁକମ୍ପାରେ ବିଗଳିତ ହୋଇଗଲା । ଅତି ଆବେଗଭରା କଣ୍ଠରେ ସେ ପ୍ରଶ୍ନ କଲେ—

ତୁମ୍ଭେମାନେ କିଏ ? ଏପରି ଆର୍ତ୍ତ ଚିତ୍କାର କରିବାର କାରଣ କଣ ? ଉତ୍ତର ଆସିଲା—

ମୁଁ ଭୀମ

ମୁଁ ଅର୍ଜୁନ

ମୁଁ ଦ୍ରୌପଦୀ

ମୁଁ ନକୁଳ

ମୁଁ ସହଦେବ

ଆମ୍ଭେମାନେ ଦ୍ରୌପଦୀଙ୍କର ପୁତ୍ର ।

ଆତ୍ମୀୟ ସ୍ୱଜନଙ୍କର କଣ୍ଠସ୍ୱର । ଯୁଧିଷ୍ଠିର ଭାବ ବିହ୍ୱଳିତ ହୋଇ ଉଠିଲେ । ଏ କ'ଣ ? ଏତ ମୋର ଭାଇ, ସ୍ତ୍ରୀ ଓ ପୁତ୍ର ମାନେ ।

ମନରେ ଆସିଲା—ଦୁର୍ଯ୍ୟୋଧନ କେଉଁ ଧର୍ମବଳରେ ଅଳ · ମହାନନ୍ଦରେ ଅଧିଷ୍ଠିତ, ଆଉ ଏମାନେ କେଉଁ ପାପ ଯୋଗୁଁ ଏପରି ଦୁଃସହ ଯନ୍ତ୍ରଣା ଭୋଗ କରୁଛନ୍ତି ! ମୁଁ ଜାଗ୍ରତ ନା ସ୍ୱପ୍ନ ଦେଖୁଛି—ମୋର ମୁଣ୍ଡ ବିଗିଡ଼ି ଯାଇ ନାହିଁତ ?

କ୍ରୋଧରେ, ଦୁଃଖରେ ସେ ଅଧୀର ହୋଇପଡ଼ିଲେ । ଦେବତାମାନଙ୍କୁ ଅଭିଶାପ ଦେଲେ । ଦେବତାମାନଙ୍କର ଏହି ପକ୍ଷପାତ ବିଚାରରେ ସେ କ୍ଷୁବ୍ଧ ହେଲେ । ଭାବିଲେ, ଏଠାରେ ନ୍ୟାୟ ବିଚାର ନାହିଁ—ତା ନ ହୋଇଥିଲେ ପାପୀ ପୁରସ୍କୃତ ହୁଅନ୍ତା ଓ ଧାର୍ମିକ ନରକଯନ୍ତ୍ରଣା ଭୋଗ କରନ୍ତା !

ତାପରେ ସେ ଦେବଦୂତଙ୍କୁ ଅତି କଠୋର ସ୍ୱରରେ କହିଲେ—ଯାଅ, ମୁଁ ଆଉ କେଉଁଆଡ଼େ ଯିବି ନାହିଁ । ଯେଉଁଠାରେ ମୋର ପ୍ରାଣର ଆତ୍ମୀୟ ସୋଦର ମାନେ ଅଛନ୍ତି ସେହିଠାରେ ହିଁ ମୋର ବାସସ୍ଥାନ । ସେ ସ୍ୱର୍ଗ ବା ନରକ ଯାହାହେଉ—

ସେତେବେଳକୁ ଦିନ ଦ୍ୱିପ୍ରହର ଗଡ଼ିଗଲାଣି । ବର୍ଷାର୍ତ୍ତ ହୃଦୟରେବ ପାଷାଣ ପିରାମିଡ଼ ପରି ଯୁଧିଷ୍ଠିର ସେହିଠାରେ ଛିଡ଼ା ହୋଇଥାନ୍ତି—ଯେପରି ବାହ୍ୟ ଜ୍ଞାନଶୂନ୍ୟ ।

ଏତିକବେଳେ ଯମ ଓ ଇନ୍ଦ୍ର ସେଠାରେ ଉପସ୍ଥିତ ହେଲେ । ଅନ୍ଧକାର କ୍ରମଶଃ ଅପସରିଗଲା । ସେ ଅଞ୍ଚଳ ସ୍ନିଗ୍ଧ ଦିବ୍ୟ ଆଲୋକରେ ଆଲୋକିତ ହୋଇଗଲା । ଚତୁର୍ଦ୍ଦିଗରୁ ଭାସିଆସିଲା ସୁଶୀତଳ ସୁବାସପୂର୍ଣ୍ଣ ଗନ୍ଧବହ । ସେ ଆଲୋକରେ, ସେହି ଶୀତଳ ବାୟୁ ସଂସ୍ପର୍ଶରେ ଯେପରି ଯୁଧିଷ୍ଠିରଙ୍କର ଜ୍ଞାନ ଫେରିଆସିଲା—ଆଖି ଫିଟାଇ ଦେଖିଲେ ସେ ଭଉଷ ଦୃଶ୍ୟ କେଉଁଆଡ଼େ ଅନ୍ତର୍ହିତ ହୋଇଯାଇଛି—ସମ୍ମୁଖରେ ବିରାଜିତ ସ୍ୱୟଂ ଧର୍ମରାଜ ଯମ ଓ ସ୍ୱର୍ଗର ରାଜା ଇନ୍ଦ୍ର ।

ଧର୍ମରାଜଙ୍କ ମୁହଁରେ ହାସ୍ୟର ଅପୂର୍ବ ଛଟା । ସେ କହିଲେ ବତ୍ସ ଏ ଥରକୁ ମିଶାଇ ମୁଁ ତୁମକୁ ତିନିଥର ପରୀକ୍ଷା କଲି—ଥରେ ଯକ୍ଷ ରୂପରେ, ଥରେ ଶ୍ୱାନ ରୂପରେ, ଆଉ ଏହି ଶେଷ ପରୀକ୍ଷାରେ ତୁମେ ଉତ୍ତୀର୍ଣ୍ଣ ହୋଇଛ । ତୁମେ ତୁମର ଭାଇ ଓ ଆତ୍ମୀୟ ସୋଦରମାନଙ୍କ ପାଇଁ ସ୍ୱର୍ଗସୁଖ ପରିତ୍ୟାଗ କରି ନରକବାସ ପାଇଁ ସଂକଳ୍ପ କଲ । ପ୍ରକୃତରେ ଭୀମ ଅର୍ଜୁନ କେହି ନରକପୁରୀରେ ନାହାନ୍ତି । ଏସବୁ ମାୟା—ଏହା ପ୍ରକୃତରେ ସ୍ୱର୍ଗ । ନରକ ନୁହେଁ ।

ତତ୍ପରେ ଯୁଧିଷ୍ଠିରଙ୍କର ନର ଶରୀର ଅନ୍ତର୍ହିତ ହୋଇଗଲା । ସେ ଦେବତାରେ ପରିଣତ ହୋଇଗଲେ । ତାପରେ ସେ ଦେଖିଲେ, ତାଙ୍କର ଭାଇମାନେ ଓ ଧୃତରାଷ୍ଟ୍ରଙ୍କର ପୁତ୍ରସକଳ ଦେବାସନରେ ଅଧିଷ୍ଠିତ ।

ଯୁଧିଷ୍ଠିରଙ୍କ ମନରେ ଅପୂର୍ବ ଶାନ୍ତି ।

ଏହା ଏକ କାହାଣୀ ହୋଇପାରେ, ମାତ୍ର ଲୋକ ସଂପଦଆପଦରେ ଧର୍ମପଥରୁ ବିଚ୍ୟୁତ ନ ହୋଇ ଧର୍ମାନୁମୋଦିତ କାର୍ଯ୍ୟରେ ଲିପ୍ତ ରହିଲେ ଶେଷରେ କିପରି ସ୍ୱର୍ଗସୁଖ ଲାଭକରେ, ଯୁଧିଷ୍ଠିର ତାର ଏକ ଜ୍ୱଳନ୍ତ ଉଦାହରଣ । ସେଥିପାଇଁ ଜନ ମାନସରେ ସେ ଆଜ ସୁପ୍ରତିଷ୍ଠିତ । ସେ ଧର୍ମର ଅବତାର । ସେ ଶ୍ରେଷ୍ଠରାଜା । ତେଣୁ ସେ ଧର୍ମରାଜ ଯୁଧିଷ୍ଠିର ।



● ଏହି ସିରିଜ୍‌ର ଅନ୍ୟାନ୍ୟ ବହି

ମହାମୁନି ବ୍ୟାସଦେବ

ପିତାମହ ଭୀଷ୍ମ

ଗୁରୁଦେବ ଦ୍ରୋଣାଚାର୍ଯ୍ୟ

ମହାଦାନୀ କର୍ଣ୍ଣ

ମହାବଳୀ ଭୀମ

ଧନୁର୍ଦ୍ଧାରୀ ଅର୍ଜୁନ

ମାତୁଳ ଶକୁନି

ମହାମାନୀ ଦୁର୍ଯ୍ୟୋଧନ

ମହାସତୀ ଦ୍ରୌପଦୀ

ଜନନୀ କୁନ୍ତୀ